ପିଣ୍ଡିକ ଶ୍ରୀଚନ୍ଦନ କୃତ

# ବୃହତ୍

# ବସନ୍ତ ରାସ

ଶ୍ରୀ ଅଜୟକୁମାର ଘୋଷଙ୍କ ଦ୍ୱାରା
ତୃତୀୟବାର ପ୍ରକାଶିତ ।



ଶ୍ରୀ ହରନାଥ ପ୍ରେସ
କଟକ—୨

ମୂଲ୍ୟ ଟ· ୨୫ ଦୁଇଟଙ୍କା ଆଠଅଣା ମାତ୍ର

# ବସନ୍ତ ରାସ



ଶ୍ରୀ ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ ।

## ବନ୍ଦାପନା

ଗୋପ ଗୋପିଏ଼, ଅର୍ଘ୍ୟ ବନ୍ଦାନ୍ତି, ଜୟ ମଙ୍ଗଳଂ, ଶୁଭ ମଙ୍ଗଳଂ । ପଦ । ଅଷ୍ଟ ସଖୀ ହୋଇ ମେଳ, କରେ ଧରି ଅର୍ଘ୍ୟ ଥାଳୀ, କେହୁ ଦିଏ ହୁଳହୁଳି, ନାଦରେ ସ୍ଥଳୀ ଉଚ୍ଛୁଳ । ୧ । କେଉଁ ବାଳୀ ମାରେ ତାଳ, ନାଚେ ଶ୍ୟାମ ଢଳ ଢଳ, ଅଧରେ ଦେଇ ମୁରଲୀ, ବଜାଏ଼ ସୁସ୍ୱର କରି । ୨ । ଗୋଧନ ବାହୁଡ଼ା କାଳେ, ଗୋପ ଗୋପାଳଙ୍କ ମେଳେ ନାଚନ୍ତି ନନ୍ଦ ଦୁଲାଳେ, ଧରି ଜାମୁ ଡାଳେ ଡାଳେ । [illegible] । ବାମେ ରାଧା ଚନ୍ଦ୍ରାବଳୀ, ମଧ୍ୟେ ନାଚେ ବନମାଳୀ, ଶ୍ରୀଚନ୍ଦନ ମନେ ଭାଳି, ଦିଏ ତହିଁ କରତାଳି । ୪ ।

### ବନ୍ଦନା ଶ୍ଳୋକଃ ।

ମାଙ୍ଗଲ୍ୟଂ ଦଧି ଦୀପକାକ୍ଷତଯୁତଂ ରମ୍ଭା ତରୁ ସ୍ଥାପନଂ ।
କୁମ୍ଭଂ ପୂର୍ଣ୍ଣ ଜଳଂ ସୁପୀତ ବସନଂ ଦୁର୍ବାଦଳଂ ତଣ୍ଡୁଳଂ ।
ଚୂତ ପଲ୍ଲବ ନାରିକେଳ ସହିତଂ ପଦ୍ମୋପରି ସ୍ଥାପିତଂ ।
ଶ୍ରୀଗୋବିନ୍ଦ ଦେବାଧିବାସଂ କୁରୁତେ ନାନାଦି ବାଦ୍ୟୋତ୍ସବଂ ।୧ ।
ବନ୍ଦେ ଗୁରୂନ୍ ଈଶଭକ୍ତାଂଶ୍ଚ ସମ୍ୟକ୍‌ସଙ୍କାବତାରକାନ୍ ।
ତତ୍‌ପ୍ରକାଶାଶ୍ଚ ତଚ୍ଛକ୍ତିଃ କୃଷ୍ଣଚୈତନ୍ୟ ସଞ୍ଜ୍ଞକଂ । ୨ ।
ବ୍ରଜସ୍ତ୍ରୀଣାଂ ପ୍ରେମ ପ୍ରବଣ ହୃଦୟେ ବା କ ମଥବା ।
କୃପା ଯୁକ୍ତୋ ଭକ୍ତଃ ସ୍ୱନିଜ ଧନଦାନେନ ନିପୁଣଂ ।
ଅପିସ୍ତ୍ୟାମ୍ନାଗମୋ ଜଇହ୍ୟ ବ୍ରଜ ନିଷ୍ଠା ସୁ-କୁଶଳୋ ।
ବ୍ରଜାନନ୍ଦଂ ବନ୍ଦେ ନବ ଜଳଦ ଲୋ ଦରନିଭଂ । ୩ ।
ବାଞ୍ଛାକଳ୍ପତରୁଭ୍ୟଶ୍ଚ କୃପାସିନ୍ଧୁଭ୍ୟ ଏବଚ ।
ପତିତାନାଂ ପାବନେଭ୍ୟୋ ବୈଷ୍ଣବେଭ୍ୟୋ ନମୋ ନମଃ । ୪ ।

ଗୃହ୍ୟଂ ଗୋପୀ ବୁରାସ୍ପଦଂ ନିଜଗତାଂ ସାର ଜସ୍ୱିନ୍ବା ବୃତଂ ।
ଯସ୍ୟା ନିଷ୍ଟପଷ୍ଟଂ ପ୍ରସାଦ ସୁଲଭଂ ଗୋବିନ୍ଦପାଦାମ୍ବୁଜଃ ।
ଅଦ୍ୟା-ଶକ୍ତିମଶେଷ ଲୋକ ଜନନୀ ବ୍ରହ୍ମାଦିଭିର୍ବନ୍ଦିତା ।
ବନ୍ଦେ ତାଂ କୁଳଦେବତା ମିବ ମହାମାୟା ଜଗନ୍ମୋହିନୀଂ । ୫ ।
ବନ୍ଦେ ରୁଦ୍ର ବିରଞ୍ଚି ନାରଦ ଶୁକ ବ୍ୟାସୋଽଥବା କୁରବଂ ।
ପ୍ରହ୍ଲାଦାର୍ଜୁନ ଅର୍ଯ୍ୟମାରୁତ ମୁଖାନ୍ ଶ୍ରୀବାସୁଦେବ ପ୍ରିୟାନ୍ ।
ଯତ୍କୀର୍ତ୍ତି ସୁର ନିମ୍ନଗେଚ ବିମଳା ତ୍ରୈଲୋକ୍ୟ ସେବ୍ୟାପ୍ୟନା
ସ୍ତଗେନ୍ଦ୍ରସ୍ୟ ଗଣେ ବିବସ୍ୱ ବହତାଂ ପାନେ ସୁଦେ ବାହବେଭ୍ ।
ଅଜ୍ଞାନ ତିମିରାନ୍ଧସ୍ୟ ଜ୍ଞାନା-ଞ୍ଜନଶଳାକୟା ।
ଚକ୍ଷୁରୁନ୍ମିଳିତଂ ଯେନ ତସ୍ମୈ ଶ୍ରୀ ଗୁରୁବେ ନମଃ ।

ପୟାର ।

ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧ ହୋଇଥିଲା । ଜ୍ଞାନାଞ୍ଜନ ଦୟା ଯେହୁ ପ୍ରକାଶ କରିଲ ହେ । ୧ । ଏବଂ ଭୂତ ଶ୍ରୀଗୁରୁ ଚରଣତଳେ ଆମି । ପୁନଃ ପୁନଃ ହୟାଁ ନିରନ୍ତରେ ପରଣାମି ହେ । ୧ । କୋଟି ଜନ୍ମାର୍ଜିତ ପୁଣ୍ୟେ ଯେ ଲବ୍ଧ ନା ହଏ । ଗୁରୁ କିପା ହେଲେ ସେହୁ ଅଶରେ ମିଲୟେ ହେ ।୩। ଯାହା ହେତେ ବୈଷ୍ଣବେ ସୁ-ମଙ୍ଗଲ ଘଟନା । ଅଜ୍ଞାନୀ ପିଣ୍ଡିକ କରେ ସେ ପାଦ ଭାବନା ହେ । ୪ ।

ଚୂହା ।

ଅଜ୍ଞାନ ତମିରେ ଚକ୍ଷୁ ମୋର । ଯୋଟିଥିଲେ ମହା ଅନ୍ଧକାର । ୧ ।
ଜ୍ଞାନାଞ୍ଜନ ଦୟାଁ । ପ୍ରକାଶିଲ । ଏବଂଭୂତ ଗୁରୁ ପାଦ ତଲ । ୨ ।
ପୁନଃ ପୁନଃ ନିରନ୍ତରେ ଅମି । ପ୍ରନମିତ ହେଉଛୁଁ ହେ ସ୍ୱାମୀ । ୩ ।
କୋଟି ଜନ୍ମାର୍ଜିତ ପୁଣ୍ୟ କର । କେବେହେଁ ସେ ଲବ୍ଧ ନୁହେ ସର ।
ଯା ହେତେ ବୈଷ୍ଣବ ସୁମଙ୍ଗଳ । ଦୀନ ଶ୍ରୀଚନ୍ଦନ ହୟାଁ ଭୋଳ । ୫ ।

ଶ୍ଳୋକ ।

ଯତ୍କୃପା ଲେଶମାତ୍ରେଣ ମୂଢୋଽପି ବିବୁଧାୟତେ ।
ଶବ୍ଦ ପ୍ରାପ୍ତନେ ତସ୍ମୈ ଶ୍ରୀ ଶିକ୍ଷାଗୁରବେ ନମଃ ।

ପୟାର ।

ଯାର କିପାବିନ୍ଦୁ ପାୟାଁ । ଅତ ମୂଢ଼ଜନ । ମୂକ ହୟା ରାଧା କିଷ୍ଣ ଲୀଲାର ଗାୟନ ହେ । ୧ । ବିବୁଧାଦ ତାର ସନେ ନା ହଏ ସମତା । ସେହୁ ଶବ୍ଦପେର ପାଦେ ଅମାର ନମ୍ରତା ହେ । ୨ । ସେହୁ ଶିକ୍ଷା ଗୁରୁ ବଟେ ସାକ୍ଷାତ ଗୋସାଞି ଧୂଲତେ ଲୁଟିୟାଁ । ବନ୍ଦୁ ନିତ ସ୍ତୁତ କରି ହେ । ୩ ।

ଶ୍ଳୋକଃ ।

ସ୍ମେର ଭଙ୍ଗି ତ୍ରୟ ପରିଚିତାଂ ସାଚି ବିସ୍ତୀର୍ଣ୍ଣ ଦୃଷ୍ଟିଃ ।
ବଂଶୀନ୍ୟସ୍ତାଧର କିଶଳୟ ମୁଜ୍ଜ୍ୱଳଂ ଚନ୍ଦ୍ରକେଣ ।
ଗୋବନ୍ଦାଖ୍ୟଂ ହର ତନୁମିତା କେଶି ତୀର୍ଥୋପକଣ୍ଠେ ।
ତତ୍‌ପ୍ରେକ୍ଷିଷ୍ଟଂ ତବ ଯଦ ସଖେ ବନ୍ଧୁସଙ୍ଗେ ଶ୍ରୀରଙ୍ଗଃ ।

ପୟାର ।

ତ୍ରିଭଙ୍ଗି ଭଙ୍ଗିମା ସ୍ମିତ ହାସ୍ୟ ଭଙ୍ଗୀ ଗୃହୁ । ଈଷିତ ନେତ୍ରାନ୍ତେ ଝାଲେ ସଖୀ ଧୃତି ମେଲୁ ହେ । ନବ କିଶଳୟ ଓଷ୍ଠେ ବଂଶୀ ନ୍ୟସ୍ତ ହୋଇଛେ । ଉଜ୍ଜ୍ୱଳ ଚନ୍ଦ୍ରକ ଚୂଲ ଶିରେ ସାଜେ ସ୍ୱଚ୍ଛେ ହେ । ତନୁ ମନୋହର ରୂପ ଶ୍ୟାମଲ ସୁନ୍ଦର । ଓରେ ମନ କେଶିତୀର୍ଥ ତୀରେ ତାଙ୍କେ ହେରି ହେ । ଶ୍ରୀରଙ୍ଗେର ଅଙ୍ଗେ ନେତ୍ର ସଖେ ବନ୍ଧୁ ହୟ । କର ତାରାମୃତ ପାନ ଓରେ କର୍ଣ୍ଣ ଦ୍ୱୟ ହେ । ଓରେ ପାମର୍ ମନ ବାଉଳେର ବାକ୍ୟ ମାନ । ସ୍ଥିର ହୟ୍ୟାଁ ରାଧା କିଷ୍ଣ ଲୀଳ ଗାନ ଶୁନ ହେ । ୫ ।

ଶ୍ଳୋକଃ ।

ନବୀନ ଘନ ସୁନ୍ଦରଂ କଳିତ କେକୀ ପୁଚ୍ଛୋଜ୍ଜ୍ୱଳଂ ।
ସୁବର୍ଣ୍ଣଂ ରୁଚିରାମ୍ବରଂ କ୍ୱଣିତ ବେଣୁନାଦ ମୁହୁଃ ।
କଳିନ୍ଦ ତନୟା ତଟେ ଲଳିତ ଗୋପ କନ୍ୟା ବୃତଂ ।
କଦମ୍ବ ତଳ ଲମ୍ପଟଂ କମଳପତ୍ରନେତ୍ରଂ ଭଜେ ।

ପୟାର ।

ନବୀନ ଘନ ସୁନ୍ଦର ଶ୍ୟାମଳ ମୂରତି । କଳିତ କେକୀ ପୁଚ୍ଛରେ ଉଜ୍ଜ୍ୱଳିତ ଅତି ହେ । ୧ । ସୁବର୍ଣ୍ଣ ରୁଚିରାମ୍ବର ଶୋଭେ କଟିତଟ । କ୍ୱଣିତ ବେଣୁ ବାଦନ ମୁହୁଃ ସୁପ୍ରକଟ ହେ । ୨ । କଳିନ୍ଦତନୟା ତଟେ ଅତି ସୁଲଳିତ । ଗୋପକନ୍ୟା ଚଉପାଶେ ହୋଇଛେ ଅବୃତ ହେ । ୩ । କଦମ୍ବ ତଳ ଲମ୍ପଟ କମଳ ନୟନ । ଓରେ ସାଧୁଜନା ଏହୁ ରୂପ କର ଧ୍ୟାନ ହେ । ୪ ।

ଶ୍ଳୋକଃ ।

ବନ୍ଦେ ରାଧାଂ ପ୍ରମତ୍ତାଂ ମଦନ କଳଯୁତାଂ ପଦ୍ମବକ୍ତ୍ରାଂଏ ସୁହାସାଂ ।
ହେମାଙ୍ଗୀ ଗୃଚ୍ଛଭୂଷାଂ ରସ ଜଳଧି ତନୁ କିଙ୍କିଣୀଂ ନୂପୁରାଢ୍ୟାଂ ।
ରମ୍ୟାଂ ମୁଗ୍ଧାଙ୍ଗନାସ୍ଥାଂ ବୟସି ଗଣଯୁତାଂ ନୀଳବସ୍ତ୍ରାବୃତାଙ୍ଗାଂ ।
ପାତୌ ତାମ୍ବୁଲଯୁକ୍ତାମପର କୁଜକରେ ଦଦ୍ୟୋଂ ବାସୋପିଧାନି । ୧୨ ।

ପୟାର ।

ବନ୍ଦ ଶ୍ରୀକିଶୋରୀ ରାଧେ ରସନାର ବାଡ଼, ଯାର ଆରାଧନେ ମିଳେ କୃଷ୍ଣ ପଦଦ୍ୱନ୍ଦ ଗୋ । ୧ । ମଦନ୍‌ମଦ କଲ ଯୁଗ୍ମ ପଦ୍ମଦଲ ନେତ୍ରା, ହେମାଙ୍ଗୀଗୁଞ୍ଜ ମଣ୍ଡନା ରସସିନ୍ଧୁ ଗାତ୍ରା ଗୋ । ୨ । ରମ୍ୟା ବୃନ୍ଦାବନ ସ୍ଥିତା ସଖୀ ଗଣ ଯୁତା; ସୁନୀଳ ନୀଲ ଅମ୍ବର ସର୍ବାଙ୍ଗେ ଆବୃତା ଗୋ । ୩ । ପକ୍ୱ ନାଗବଲ୍ଲୀ ଦଲ ବୀଟିକା ଶ୍ରୀହସ୍ତ, ବାମଭୁଜେ ବାମ ଶ୍ୟାମ ବାମ ପାର୍ଶ୍ୱେ ସ୍ଥିତ ଗୋ । ୪। ଓରେ ପାମର୍ ମନ ବାଉଲେର ବାକ୍ୟ ମାନ, ନିଶି ଦିବା ଏହିରୂପ ହୃଦେ କର ଧ୍ୟାନ ହେ । ୫ ।

ଝୋଁଲ ।

ବନ୍ଦ ରାଧା ପଦ, ଅମୂଲ୍ୟ ସମ୍ପଦ, ସଖୀଗଣ କୋଟିନିଧି ଗୋ ।
ନବୀନ କିଶୋରୀ, କୃଷ୍ଣ ମନୋହାରୀ, ସଦା କାନ୍ତକେ ଆରାଧି ଗୋ ।
ଏହି ଗୁଣେ ନାମ ରାଧା, ସବ ନାରୀ ଶିରୋମଣି ସିଧା ଗୋ । ୧ ।
ମଦନ ମାଦେଣି, କେଲି ଉନ୍ମାଦନି, ପ୍ରଫୁଲ୍ଲ ପଦ୍ମ ବଦନି ଗୋ ।
ମୀନ ଖଞ୍ଜନ, ଗଞ୍ଜନ ସୁନୟନ, ଗୁଞ୍ଜ କନକ ଅଙ୍ଗିନି ଗୋ ।
ମନୋହର ବେଶ ଭୂଷା, ରସଜଲଧି ତନୁ ସୁରସା ଗୋ । ୨ ।
କଟିତେ କିଙ୍କିନି, ବାଜେ କିନି କିନି, ପଦ୍ମରେ ରତ୍ନନୂପୁର ଗୋ ।
ମଦନ ରାଜାର, ନାଗରୀ କିଶୋର, ଝୁମୁ ଝୁମୁ ନାଦ ଘୋର ଗୋ ।
କୃଷ୍ଣ କର୍ଣ୍ଣେତେ ବିସ୍ତାରେ, ମନ ଧୈର୍ଯ୍ୟ ଚେତନା ହରେ ଗୋ । ୩ ।
ରମ୍ୟ ବୃନ୍ଦାବନ; ସଦା ଯାର ସ୍ଥାନ, ସଜନୀ ଗଣେର ସନେ ଗୋ ।
ନବ ଜଲଧର, ଜିନି ଦିବ୍ୟାମ୍ବର ଶୋଭା ପାଏ ଅପଘନେ ଗୋ ।
ମୃଦୁ କୋମଳ ତାମ୍ବୁଲ, ବୀଟା ଧର ଦକ୍ଷ କର ସ୍ଥଳ ଗୋ । ୪ ।
ଶ୍ରୀକୃଷ୍ଣ ଅଧରେ, ଦିଅଁ ପ୍ରେମଭରେ, ବାମକରେ ବାସ ଧରେ ଗୋ ।
ଅତି ଦୀନ ହୀନ, ଦୁଃଖି ଶ୍ରୀଚନ୍ଦନ, ଲୁଣ୍ଠେଇ ଦୁଟି ପୟରେ ଗୋ ।
କୃପାମୟି କୃପାକର, ଶୀଘ୍ରେ ସେବାତେ ନିଯୋଗି କର ଗୋ । ୫ ।

ଶ୍ଳୋକଃ ।

ପଙ୍ଗୁ ଲଙ୍ଘୟତେ ଶୈଳଂ ମୂକୋଃପି ବର୍ତ୍ତିତେ ସ୍ତୁତ ।
ଯତ୍କୃପା ତମହଂ ବନ୍ଦେ କୃଷ୍ଣ ଚୈତନ୍ୟ ମୀଶ୍ୱରଂ ।

ପୟାର ।

ଜୟ ଜୟ ଶ୍ରୀକୃଷ୍ଣ ଚୈତନ୍ୟ ଗୌରଚନ୍ଦ୍ର । ସାକ୍ଷାତ ଈଶ୍ୱର ଯେଇ ମାଧୁର୍ଯ୍ୟ ଆସ୍ୱାଦ ହେ । ୧ । ଯାର କୃପା ଲେଶ ପାଇଁ ପଙ୍ଗୁ ଲଙ୍ଘେ ଗିରେ । ମୂକେ ଜନା ଗାଏ ବେଦ ଶାସ୍ତ୍ରାରନ କର ନହେ । ୨ । ସେଇ କୃପା ବନ୍ଧୁ ଦିଅ ଆମାର ହୃଦ ୟରେ । ବନ୍ଦନା କହିବେ ଅନ ପୟାର ଛନ୍ଦରେ । ୩ ।

ଶ୍ଳୋକଃ ।

ଦୁର୍ଗମେ ପଥି ଅନ୍ଧସ୍ୟ ସ୍ଖଳନ୍ ପାଦ୍ମ ଗତେ ମୁହୁଃ ।
ସ୍ୱକୃପା ଯଷ୍ଟି ଦାନେନ ସନ୍ତୁ ସନ୍ତ୍ୟାବଲମ୍ବନଃ ॥

ପୟାର ।

ଅତ୍ୟନ୍ତ ଦୁର୍ଗମ ପଥ ଏଭବ ମଧ୍ୟର । ମାର୍ଗ ନା ଦଶଇ ଘୋଟିଥାଛେ ଅନ୍ଧକାର ହେ । ୧ । ଅମି ଅତ ମୂଢ଼ଜନା ପାପିଷ୍ଟ ପାମର । ଚଳୁଛେ ଚଳୁଛେ ପାଦ ସ୍ଖଳନ ଅମାର ହେ ।୨। ଓହେ ସାଧୁଜନା ତୁମି ପତିତ ପାବନ । ତୁମାର କୃପା-ଯଷ୍ଟି ଦେଇ ଜର ଅଲମ୍ବନ ହେ ।୩। ଜୟ ଜୟ ଗୌର ଭକ୍ତବୃନ୍ଦ ପାଦପଦ୍ମ । ଦୟାବଲେ ଅମାର ହୃଦେ ଦେଅ ଅବେ ସଦ୍ମ ହେ । ୪ । ବନ୍ଦ ଅମି ନିଜ ଗୁରୁ ପଦ ସାରସରେ । ଯାର କୃପା ଭବସିନ୍ଧୁ ହେଲେ ପାରକରେ ହେ । ୫ ।

ଶ୍ଳୋକଃ ।

ମେଘୈର୍ମେଦୁରମମ୍ବରଂ ବନଭୁବଃଶ୍ୟାମସ୍ତମାଲ ଦ୍ରୁମୈ
ର୍ନକ୍ତଂ ଭୀରୁରୟଂ ତ୍ୱମେବତଦମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଲିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ ।
ରାଧାମାଧବୟୋର୍ଜୟନ୍ତି ଯମୁନାକୁଳେ ରହଃ କେଳୟଃ ।୧୫।

ପୟାର ।

ଏକଦିନେ ନନ୍ଦସନେ ଗୋଷ୍ଠେ କୃଷ୍ଣ ଥିଲ, ଯମୁନାର କୂଳେ କୃଷ୍ଣ ରାଧାକେ ଦେଖିଲ ହେ ॥ ନନ୍ଦ ବୋଲେ ଶୁନ ରାଧେ ବଚନ ଆମାର, ଗଗନେ ଅଚ୍ଛାଦ ମେଘ କୈଲ ଅନ୍ଧାକାର ହେ ॥ *ଚଳିଲ କୃଷ୍ଣକେ ଲୟା ଭାନୁର ଦୁଲାଲ ପ୍ରତିପଥେ ପ୍ରୀତକୁଞ୍ଜେ ଦ୍ରୁମ ତଳେ ମିଲ ହେ ॥ ଯମୁନାର କୁଳେ ରାଧା ମାଧବ ଏକାନ୍ତେ, ଆରମ୍ଭିଲ ରାସକ୍ରୀଡ଼ା ଜୟ ଜୟ ଯୁକ୍ତେ ହେ ॥ ଏଇ ଅର୍ଥେ ଅଛେ ବହୁ ବରୋଧ ଲକ୍ଷଣ, ନମସ୍କାର ଅଶୀର୍ବାଦ ବସ୍ତୁ ନିଦର୍ଶନ ହେ ॥ ସମର୍ଥ ଶ୍ରୀଜୟଦେବ ସକଳ ବର୍ଣ୍ଣିଛେ, ନମସ୍କାର ଅଶୀର୍ବାଦ ଗ୍ରନ୍ଥ ସ୍ଥାନେ ଅଛେ ହେ ॥ ମାଧବେର ଶବ୍ଦ କୃଷ୍ଣ ଦକ୍ଷିଣ ନାୟକ, ରାଧା ପରକୀୟାରସ କୁମୁଦ ଶଶାଙ୍କ ହେ ॥ ଭକ୍ତମୁକ୍ତ ପରେ ଯେଇ ଉତ୍କର୍ଷ ହଏ, ଯାହା ଆସ୍ୱାଦନେ ରାଧା କୃଷ୍ଣ ପାଦ ପାଏ ହେ ॥ ଜୟନ୍ତି ଶବ୍ଦେ ଜଗତ ଅଶୀର୍ବାଦ ହବେ, ଏ ଲୀଳା ଭାବନେ ବ୍ରଜେ ରାଧାକୃଷ୍ଣ ପାବେ ହେ ॥ ଯେଇ ପରକୀୟା ଲୀଳା ପରମ ପାବନ, ତାତେ ନମସ୍କାର କର ହରଷେ ଭୂଜନ ହେ ॥ ଗ୍ରନ୍ଥ ସୂଚ କର କରବ ବର୍ଣ୍ଣନ, ରାଗ ଭକ୍ତଜନା ମନ କର୍ଣ୍ଣ ଦେଅ ଶୁନ ହେ ॥ କାନ୍ତେ ଗାଢ଼ ମାନ ରାଖିଥିଲ ଭାନୁ ସୁତା, ସଖିର ବଚନେ ହେଲ ମହା ଅନନ୍ଦିତା ହେ ॥ ସଖିବୋଲେ ତୁମାର ବନେ କୃଷ୍ଣ ବଡ଼

ଦୁଃଖୀ, କୁଞ୍ଜେ ଅଭିସାର ହୟ ପୂର୍ଣ୍ଣଚନ୍ଦ୍ର ମୁଖି ଗୋ । ମେଘସମ ଘୋଟିଅଛେ ବହୁଲ ଅନ୍ଧାର, ବନଭୂମି ତମାଲେର ଭ୍ରମ ତମଘୋର ଗୋ ॥ ପୂର୍ବ୍ବରେ କର-ୟାଛେ ଅପରାଧ ସେଇ, ଏଇହେତୁ ପ୍ରାଣନାଥ ଅସିତେ ଡରଇ ଗୋ । ମନୋହର କୃଷ୍ଣ ଗୃହେ ଚଲ ବିନୋଦିନୀ, ତେହାବ ତୁମାକେ ହବେ ଅନ୍ନ ମିଲମନ ଗୋ । ଏଇବାଣୀ ଶୁନି ରାଧାର ଆନନ୍ଦ ବାଢ଼ିଲ, କିନ୍ତୁ ଅଭିସାରେ ଧନୀ ନିକୁଞ୍ଜେ ଚଲିଲ ହେ ॥ ଯମୁନାର କୂଳେ ରାଧା ମାଧବ ହରଷେ, ଏକାନ୍ତେ ରଜନୀ ନିଲ ନାନା କ୍ରୀଡ଼ାରସେ ହେ ॥ ଏଇଲୀଳା ଶ୍ରଦ୍ଧାଯୁକ୍ତେ ଯେ କରେ ଶ୍ରବଣ, ଅଚିରେତେ ରତି ବାଢ଼େ ଯୁଗଳଚରଣ ହେ ॥

ଶ୍ଳୋକଃ ।

ବାଗ୍‌ଦେବତାଚରିତଚିତ୍ରିତଚିତ୍ତସଦ୍ମା ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବରତିକେଳିକଥାସମେତମେତଂ କରୋତି ଜୟଦେବକବିଃ ପ୍ରବନ୍ଧଂ ।

ପୟାର ।

ବାଗ୍‌ଦେବତାଚରିତ ଚିତ୍ରିତ ଚିତ୍ତବନେ । ଚକ୍ରବର୍ତ୍ତୀ ପଦ୍ମାବତୀଚରଣ ଚାରଣେ ହେ ॥ ପ୍ରବନ୍ଧେତେ ରାଧା କୃଷ୍ଣ ରତିକେଳି କଥା । ଆରମ୍ଭିଲ କବି ଜୟଦେବ ମୃଦୁ ଗାଥା ହେ ॥

ଶ୍ଳୋକଃ ।

ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନାତି ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ।
ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟଗୋବର୍ଦ୍ଧନଃ ।
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀକବିକ୍ଷ୍ମାପତିଃ ।୧୭।

ପୟାର ।

କବି ଉମାପତି ଧର ବଚନ ମଞ୍ଜୁଲ । ପଲ୍ଲବାୟେ ବିବୁଜନ ମାନସ କେବଲ ହେ ॥ ସନ୍ଦର୍ଭ ଶୁଦ୍ଧ ବଚନେ ଅଙ୍ଗ ଜନ ପ୍ରୀତେ । ଶରନ ଗେଲ ଜୟ-ଦେବ ଚରଣ ଭଲାତେ ହେ ॥ ଶରଣବତ୍ସଲ ଜୟଦେବ ମହାଶୟ । ରାଖିଲ ହୃଦୟ ମାଝେ ରାଖି ସେହ ଭୟ ହେ ॥ ଏଇଯୋଗୁଁ ସେଇ ସୁଧୀବଚନ ଶୁନିଲ । ରତିତ ପାଷାନ ହୃଦ ଜରଲ ତରଲ ହେ ॥ ଶୃଙ୍ଗାର କାବ୍ୟ ରଚନେ ଆର୍ଯ୍ୟ ଗୋବର୍ଦ୍ଧନ । ସେଇତାଏ ସଙ୍ଗି ହେତେ ହେଲ ବିଦ୍ୟମାନ ॥ ଧୋୟୀ କବିରାଜ ଅଟେ ମହା ଶ୍ରୁତିଧର । ଅବିସ୍ମୃତ ସ୍ୱାଦୁ ସେଇ ରସେର ଭଣ୍ଡାର ହେ ।୬।

ଶ୍ଳୋକଃ ।

ଯଦି ହରି ସ୍ମରଣେ ସରସଂ ମନୋ । ଯଦି ବିଲାସକଲାସୁ କୁତୂହଲଂ ।
ମଧୁରକୋମଳକାନ୍ତପଦାବଲୀଂ । ଶୃଣୁ ତଦା ଜୟଦେବ ସରସ୍ୱତୀଂ ।୧୮।

ପୟାର ।

ଯଦି ହରି ସୁମରନେ ମାନସେ ଲାଳସା, ଯଦି ସେହି କେଲି କଳା କୁତୁ-ହଳେ ଅଶା ହେ । ତବେ ସୁରସିକ ଜୟଦେବ ବାଣୀ ଶୁନ; ମଧୁର କୋମଳ କମନୀୟ ପଦଗନ ହେ ॥ ରାଗମୟ ଜନା ରାଗ ବନ୍ଧେ ଗୀତ ଶ୍ଳୋକ; କୈଲ ମହା କାବ୍ୟ ପଦ୍ମାବତୀର ନାୟକ ହେ ॥ ଯାର କିପା ବଲେ ତାର ବଦନ ଉଦ୍ଗୀର୍ଣ୍ଣ, ଉଚ୍ଛିଷ୍ଟ ଚର୍ବିତ ଇଚ୍ଛେ ଅଙ୍କ ଶ୍ରୀଚନ୍ଦନ ହେ । ୪ । ମଧୁର ଅସ୍ୱାଦୀ ଜନା ଦିବେ ପ୍ରେମଧନ; ବାତୁଲ ପିଣ୍ଡିକ ମାଗେ ଦାନ୍ତେ ଲୟା ତୃନ ହେ । ୫ ।

ଦୀର୍ଘଛନ୍ଦ ।

ପ୍ରଳୟ ପୟୋଧିବନ ବହୁ ବହୁତ ବିଧାନ ଅଖେଦ ଚରିତେ ବେଦଧର । ହେ କେଶବ ପୁର୍ଣ୍ଣକର; ହେ ମୀନ ଶରୀର ଧର, ଜୟତୁ ଜଗତ ଈଶ ହରି ହେ । ଜଗନ୍ନିବାସ । ୧ । ପ୍ରବଳ ବିପୁଲ ତବ, ପୃଷ୍ଠେ ବହୁ ମହାଭାର, ଗରିଷ୍ଠ ସେ ପୃଷ୍ଠ ଭୁଷ୍ଟ ଭାର । ବହୁଚାଲ ବଦ୍ଧ ବର୍ଣ୍ଣ, ଚକ୍ରମତ ସେ ବିସ୍ତୀର୍ଣ୍ଣ; ହେ କେଶବ କୂର୍ମ ରୂପଧାରି ହେ । ଜଗନ୍ନିବାସ । ୨ ।

ବସିଅଁ ଦଶନ ଶିଖେ; ଅଛଇ ଅବନୀ ସୁଖେ; ଶଶିତେ କଲଙ୍କ ରେଖା ପରି । ହେ କେଶବ ଧୂର୍ତ୍ତିତର, ହେ ଶୁକର ରୂପଧର ଜୟତୁ ଜଗତ ଈଶ ହରି ହେ । ଜଗନ୍ନିବାସ । ୩ ।

ଶ୍ରୀକର କମଳ କର, ନଖ ଅଦ୍ଭୁତ ଭୂଧର, ଦଳନ କୈଲ ଦୈତ୍ୟ ତନୁ ଭୃଙ୍ଗ । ବୀର ହିରଣ୍ୟ କଶିପୁ; ଧରି ନରହରି ବପୁ; ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ । ୪ ।

ଅଦ୍ଭୁତ ବାମନ ହୟାଁ; ବଳିକୁ ବଳୀ ଛଳିୟାଁ; ତ୍ରିବିକ୍ରମ ରୂପେତେ ବିକ୍ରମ । ପଦ ନଖ ଜାତ ଜଳ; ଭୁବନ ପାବନ କୈଲ, ହେ କେଶବ କାମ ରୂପୀ ତୁମି ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ; ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ୫ ।

ନାଶିଅଁ ଜଗତ ପାପ, ଶାନ୍ତ କୈଲ ଭବତାପ; କ୍ଷତ୍ରିୟ କୁଳ ରୁଧିର ନୀରେ । ତାତେ କରାଇଲ ସ୍ନାନ; ହେ କେଶବ ପର୍ଶୁରାମ; ଏକବିଂଶ ପୃଥ୍ୱୀ ଫିରେ ହେ । ଜଗନ୍ନିବାସ । ଜଗଦୀଶ ଜୟତୁ ଶ୍ରୀଅଙ୍ଗ, ଶ୍ରୀକୃଷ୍ଣ କେଶବ ଶ୍ୟାମଳ ଅଙ୍ଗ ହେ । ୬ ।

ରନେ ବିତରନ କୈଲ, ମନୋହର ବଲି ଦିଲ; ଦଶଦଶେ ଦଶ ବଦନ ହୟା । ହେ କେଶବ ରାମରୂପ; ଜୟ ଜଗତ ଅଧିପ; ଅହେ ହରି ତୁମି ଦୈତ୍ୟକ୍ଷୟ ହେ । ଜୟଜୟ ହେ ଅହେ ହରି ତୁମି ସତ୍ୟହୟ ହେ । ୭ ।

କୁନ୍ଦେନ୍ଦୁ ବିଷଦାଭର, ଅଙ୍ଗେ ଘନ ନୀଳାମ୍ବର; ସେହି ହସ୍ତେ ଏମନ୍ତ ପ୍ରତୀତ । ଲଙ୍ଗଳ ଅଘାତ ଭ୍ରମିତେ, ଯମୁନା ଶରନ ହେଉତେ, ଦହ୍ୟାଛ ନାଶିଯୁଁ । ସେଇଭ୍ରୀତ ହେ । କେଶବ ତୁମି ହଳଧର ରୂପଧାରୀ । ଜୟତୁ ଜଗତ ଈଶ ହରି ହେ । ୮ ।

ସଦୟ ହୃଦୟ ହସ୍ତା; ପଶୁବଧ ନିଷେଧିଅଁ ; ନିନ୍ଦ ମ୍ଭୃତ ଜାତ ଯଜ୍ଞବଧି । ହେ କେଶବ ବୌଦ୍ଧରୂପ, ଜୟ ଜଗତ ଅଧିପ; ଓହେ ହରି ତୁମି'ଦୟାନିଧି ହେ । ଜଗନ୍ନିବାସ, ବଧି ବଧି କଇଲ ଅବଧି ଓହେ ହରି ତୁମି ଦୟାନିଧି ହେ । ୯ ।

ନିବାରଣେ ମ୍ଳେଚ୍ଛ କୁଳ, କରେ ଧରି କରବାଳ, ଧୂମକେତୁ ସମ ସେ କରାଳ ହେ । ହେ କେଶବ କଲ୍କୀରୂପ, ଜୟ ଜଗତ ଅଧିପ, ସର୍ବେଶ୍ୱର ନନ୍ଦେର ଦୁଲାଳ ହେ । ଜଗନ୍ନିବାସ । ତୁମି ହସ୍ତ ଦଶବିଧ ରୂପ, ହେ କେଶବ ତୁମି କଲ୍କୀ ରୂପ ହେ । ୧୦ ।

ଶ୍ଳୋକଃ ।

ବେଦାନୁଦ୍ଧରତେ ଜଗନ୍ନି ବହତେ, ଭୂଗୋଳ ମୁଦ୍ଵିଭ୍ରତେ ।
ଦୈତ୍ୟାନ୍ ଦାରୟତେ, ବଳିଂ ଛଳୟତେ, କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ, ହଳଂ କଳୟତେ, କାରୁଣ୍ୟମାତନ୍ୱତେ ।
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ; ଦଶାକୃତକୃତେ, କୃଷ୍ଣାୟ ତୁଭ୍ୟଂ ନମଃ । ୧୧ ।

ଦୀର୍ଘଛନ୍ଦ ।

ବେଦୋଦ୍ଧାର ଧରାଧର, ଧରୋଦ୍ଧାର ନରହର, ବଳି ଛଳ କ୍ଷତ୍ରିକ୍ଷୟ କର । ରାବଣାରି ହଳଧାର, କୃତୁଦ୍ୱେଷି ମ୍ଳେଚ୍ଛହାର, ନମାମି ଶ୍ରୀକୃଷ୍ଣ ବଂଶୀଧାର ହେ । ନନ୍ଦନନ୍ଦନ, ତୁମାର ଅଂଶାଂଶ ଅଂଶ ହେନ, ତୁମି ହସ୍ତ ରାଧା ପ୍ରାଣଧନ ହେ ॥

ଦଶବିଂଶତ ଦ୍ୱାବିଂଶ, ଚତୁଷର୍ଷ୍ଟି ପରକାଶ, ଚତୁର୍ଦ୍ଦଶ ଚତୁଃସସ୍ର କୃତ । ବ୍ରହ୍ମାର ଶତାର୍ଦ୍ଧି ହେଉତେ, ଚତୁର୍ଦ୍ଦଶ ମନୁ ତାତେ, ପ୍ରକଟାୟ୍ୟା ଖେଲ ଲୀଳା ଭୂତ ହେ । ନନ୍ଦନନ୍ଦନ, ତୁମାର ଅଂଶାଂଶ ଅଂଶ ହେନ, ତୁମି ହସ୍ତ ରାଧା ପ୍ରାଣଧନ ହେ । ୨ ।

ଚତୁର୍ଦ୍ଦଶ କୋଟିଲକ୍ଷ, ପଞ୍ଚ ଚତ୍ୱାରିଂଶଲକ୍ଷ, ଚତ୍ୱାରିଂଶ ଅବତାର ଇତ । ଅର ଯତ ଅବତାର ଅନନ୍ତ ବ୍ରହ୍ମାଣ୍ଡୋଦର, ଅନନ୍ତକୋଟି ବ୍ରହ୍ମାଣ୍ଡେ ସ୍ଥିତ ହେ । ନନ୍ଦନନ୍ଦନ ତୁମାର ଅଂଶାଂଶ ଅଂଶ ହେନ, ତୁମିହସ୍ତ ରାଧା ପ୍ରାଣଧନ ହେ ॥

ଅଗୋ ଦାସି ଭକ୍ତଗନ, କର୍ଣ୍ଣେ ମନଦଅ ଶୁନ, ବାସନ୍ତକ ଅଧିବାସ ଗାନ । ଜଶୋଦା ଚରନେ ସେବ, ଅନାୟାସେ କୃଷ୍ଣ ପାବ, ମନେର ବାସନା ହବେପୂର୍ଣ୍ଣ ଗୋ । ସଙ୍ଗିନୀ ଶ୍ରୀନନ୍ଦନ ମାଗେ ପ୍ରେମଭିକ୍ଷ୍ୟା, କେମନ୍ତ ପାଇବ ଦବେ ଦୀକ୍ଷ୍ୟା ଗୋ । ୪ ।

କମଳା କୁଚ ମଣ୍ଡଳ, ଧୃତମକରକୁଣ୍ଡଳ, କଳିତ ଲଳିତବନମାଳ । ରବି ମଣ୍ଡଳ ମଣ୍ଡନ, ପ୍ରବଳ ଭବଖଣ୍ଡନ, ମୁନିଜନ ମାନସ ମରାଳ ହେ । ଜୟ ଜୟ ହେ, ଜୟ ଦେବ ହରେ ଜଗନ୍ମୟ ହେ । ୧ ।

କାଳୀୟ ନାଗ ଗଞ୍ଜନ; ଅଖିଳ ଜନ ରଞ୍ଜନ; ଯଦୁକୁଳ ନଳିନ ଦିନେଶ । ମଧୁ ନରକ ନାଶନ, ମୁରାର ଗରୁଡ଼ାସନ; ସୁରକୁଳ ନିଦାନ ବିନାଶ ହେ । ଜୟ ଜୟ ହେ, ଜୟ ଦେବ ହରେ ଜଗନ୍ମୟ ହେ । ୨ ।

ଅମଳ କମଳ ଦଳ, ଲୋଚନ ଭବମୋଚନ ଶୀଳ, ତ୍ରିଭୁବନ ଭୁବନ ନିଧାନ । ଜନକ ସୁତା ଭୂଷନ; ଜଇଳଜିତ ଦୂଷନ; ସମରେ ନାଶିଲା ଦଶାନନ ହେ । ଜୟ ଜୟହେ; ଜୟ ଦେବ ହରେ ଜଗନ୍ମୟ ହେ । ୩ ।

ଅଭିନବ ଜଳଧର; ସୁନ୍ଦର ଧୃତମନ୍ଦର; ରମାବଦନ ଚନ୍ଦ୍ରମା ଚକୋର । ଶ୍ରୀଜୟଦେବ ଚରନ, ଶନ୍ତ କହେ ଶ୍ରୀଚନ୍ଦନ, କବେ ହବେ ଏଇ ହୃଦ ହର ହେ । ମୋହନ, ମୁରଲୀ ବଦନ ଶ୍ୟାମଘନ, ରାଧାବଲ୍ଲଭ ଶ୍ରୀନନ୍ଦନନ୍ଦନ ହେ ।

ଦୀର୍ଘଛନ୍ଦ ।

ଜୟ ଜୟ ବୃନ୍ଦାବନ, ଜୟ ଯମୁନାପୁଳିନ, ଜୟ ଜୟ ମଳୟ ପବନ । ଜୟ ସୁବସନ୍ତ କାଳ, ଚନ୍ଦ୍ରମା ଭୃଙ୍ଗ କୋକିଳ, ଶୁକ ସାରି ନିନ୍ଦିତ ଭୁବନ ହେ । ଜୟ ଜୟ ହେ । ଜୟ ରାସରାଜି ରସମୟ ହେ । ୧ ।

ଊହା ।

ଜୟ ଜୟ ଶ୍ରୀ ରାଧିକେ । ଜୟ ଜୟ ଗାନ୍ଧର୍ବିକେ । ୧ ।
ଜୟଜୟ ବୃଷଭାନୁ ସୁତେ । କୃଷ୍ଣ ପ୍ରିୟସିକେ ସୁରସିକେ । ୨ ।
ରତିମୋହ ମଦନ ମୋହନ । ନିତ୍ୟ ନୂତନ ତନୁ ଅପଘନ । ୩ ।

ଦୀର୍ଘଛନ୍ଦ ।

ଜୟ ଯୁଗଳ ସୁଖରାଶି, ଜୟ ଜୟ ପୌର୍ଣ୍ଣମାସୀ, ଦେବୀ ଭଗବତୀ ଯୋଗମାୟା । ବସନ୍ତ ବିଳାସ ସ୍ଥଳ, ଦରଶନେ କୃପାକର, ବସନ୍ତ ବସନ ପଦଛାୟା ଗୋ । ପାବନ ପାବନ କର ମୋରେ । ମତ ଦବେ ଯୁଗଳ ପୟରେ ଗୋ ।

ଶ୍ଳୋକଃ ।

ଅରକ୍ତାଭ୍ୟାଂ ତ୍ରିନେତ୍ରା ମଣି ମୁକୁଟ ବତ ରତ୍ନ ତାଟଙ୍କାଂ ରମ୍ୟା ।
ହସ୍ତାମ୍ଭୋଜୈସ୍ତ ପାଶାଙ୍କୁଶ ମଦନ ଧନୁ ପଞ୍ଚବାଣୈସ୍ତୁ ବର୍ଣ୍ଣ ।
ଅପିନୋ ତୁଙ୍ଗ ବକ୍ଷୋ ରହତଟ ବିଳସଭାର ହାର ଜ୍ୱଳାଙ୍ଗୀ ।
ଧାନ୍ୟିମମ୍ଭୋଜହସ୍ତା ମରଣଧି ବସନାମୀଶ୍ୱରୀ ମାଶ୍ରୟାମି । ୨୦ ।

ଦୀର୍ଘଛନ୍ଦ ।

ଅରୁଣ ଅରକ୍ତ ବର୍ଣ୍ଣ, ନିନେନ୍ଦ ତରଙ୍ଗ ଘୂର୍ଣ୍ଣ, ମୁକୁଟ ତାଟଙ୍କ ରମ୍ୟ ରତ୍ନେ । ଚତୁର ହସ୍ତ ପଙ୍କଜେ. ପାଶ ଅଙ୍କୁଶ ବିଭ୍ରାଜେ, କାମଧନୁ ପଞ୍ଚଶର ଯତ୍ନେ ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତି ଦବେ ଯୁଗଲ ପଦ୍ମରେ ଗୋ । ୧ । ପୀନ ତୁଙ୍ଗ ପୟୋଧର, ତଟ ବିଳାସ ରୁଚିର, ହାର ଭାର ଉଜ୍ଜ୍ୱଳ ସୁଗାତ୍ରା । ଜଗନ୍ଧାତ୍ରୀ ପଦ୍ମହସ୍ତା, ଚକ୍ରାମ୍ବର ପରିବୃତା, ଈଶ୍ୱର କୁମାର ପଦାଶ୍ରିତା ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତି ଦବେ ଯୁଗଲ ପଦ୍ମରେ ଗୋ । ୨ । ଅନୁରାଗ ଭଲେ ଭଙ୍ଗ, ବଦନ ବର ତରଙ୍ଗ, ବସନ ଭୂଷଣ ବେଶ ବାସ । ମାଣିକ୍ୟ ବଳୟ ଗଣ, ରଙ୍ଗମାଳ୍ୟ ଆଭରଣ, ମାଣିକ୍ୟ କୁଣ୍ଡଳେ ଅଭିଳାଷ ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ । ମତି ଦବ ଯୁଗଲ ପଦ୍ମରେ ଗୋ । ୩ । ମଧ୍ୟ ମୁଖ ସୃଷ୍ଟି ବିଧାତା, ପରକୀୟ ପ୍ରକାଶିତା, ବିଳାସ ଜଳଧି ସୁଧାନିଧି । ଶ୍ରୀ ରାଧା ଅଧରୁ ଜାତ, ଯେଣିପିଠ ଦ୍ୱାରେ ସ୍ଥିତ, ପଞ୍ଚରସ ସଞ୍ଚୟନେ ନିଧି ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ, ମତି ଦିବ ଯୁଗଲ ପଦ୍ମରେ ଗୋ । ୪ । ଜୟ ବୃନ୍ଦେ ଯୂଥେଶ୍ୱରୀ, ଶ୍ରୀ ବୃନ୍ଦାବନ ଈଶ୍ୱରୀ । ଦ୍ୱାସ୍ଥ ରାଧା କିନ୍ତୁ ଲୀଳ ଦ୍ୱାରି । ଯାର ହଏ ଏକକେଶ, ସହସ୍ରେ ଶିର ପୁରୁଷ, ଅନନ୍ତ କୋଟି ବ୍ରହ୍ମାଣ୍ଡେଶ୍ୱରୀ ଗୋ । ବନଦେବି ଗୋ । ପାବନୀ ପାବନ କର ମୋରେ । ମତି ଦିବ ଯୁଗଲ ପଦ୍ମରେ ଗୋ । ୫ ।

ଚୂଡ଼ା ।

ନିତ୍ୟ ଲୋକନେ ନୟନେନ । ରାଗଭରେ ରଙ୍ଗ ନିଜଗାନ । ୧ ।
ଚତୁର୍ବର୍ଗ ପ୍ରପାଳନେ ଯାର । ଗୃହସ୍ଥ ଚତୁର୍ଭୁଜ ଚମତ୍କାର । ୨ ।
ନିପାଟର ସଖୀ ଭକ୍ତଗଣେ । ବସନ୍ତ ବିଳାସ ଦରଶନେ । ୩ ।
ଜୟ ଜୟ ବୃନ୍ଦାବନ ଚନ୍ଦ୍ର । ଜୟ ଜୟ କୁଞ୍ଜବନ ଇନ୍ଦ୍ର । ୪ ।
ଜୟ ରାଧେ ମଦନମୋହନ । ରାଧାବନ୍ଧୁ ନନ୍ଦେର ନନ୍ଦନ । ୫ ।
ଜୟ ଶ୍ରୀ ଗୋବିନ୍ଦ ଜୟ ଜୟ । ଆଦି ଅନାଦିର ପ୍ରଭୁ ହୟ । ୬ ।
ଅନନ୍ତ ଲକ୍ଷ୍ମୀର ସେବ୍ୟମାନ । ମନ୍ମଥ ମନ୍ମଥ ଶ୍ୟାମଘନ । ୭ ।

ଦୀର୍ଘଛନ୍ଦ ।

ଜୟଜୟ ଗୋପୀନାଥ, ବ୍ରଜେର ବାଳକ ସାଥ, ନନ୍ଦେରନନ୍ଦନ ବଂଶୀଧାରି । ଠାକୁରାଣୀ ସହ ବନ୍ଦେ, ତିନିଠାକୁର ପଦ ଦ୍ୱନ୍ଦେ, ଅଭିଷ୍ଟ ପୂରଣେ ମଗ୍ନ ଭରି ହେ । ମୋହନ । ୧ । ଯୁଗଲ ରଚନ ଧୂଳି, ଝାଡ଼ିଅଁ କରିବ ଝୋଲି, କଖନ୍ ମୋରେ ଏହ ଆଜ୍ଞା ଦବେ । କରି କୋଟି ନମସ୍କାର, ଶରନ୍ ମାଗୁଁ

ବାରମ୍ବାର, କିପାଇବ କିପାଇବ ଯବେ ହେ । ମୋହନ ।•ବ୍ରଜେର ଯତ ଅଙ୍ଗନା, ମାଙ୍କେ ଯତ ମାନ୍ୟଜନା, ସବେ ଏହୁ ଆଶୀର୍ବାଦ କର । କିଶ୍ଚେର ଅସୂୟା ଲଇଁ, ମାନିନୀ ନା ହବେ ରାଇ, ତୁହାଁଭ୍ରବେ ତୁହ୍ମଁ ହବେ ଭୋର ହେ । ମୋହନ । ଜୟ ଲଲିତେ ବିଶାଖେ, ଶବେ ଚମ୍ପକଲତକେ, ଜୟ ଇନ୍ଦୁରେଖେ ତୁଙ୍ଗବିଦ୍ୟେ । ରଙ୍ଗଦେବୀ ସୁଦେବିକେ, ସହର୍ଷ ହୟ ଇସ୍ତୁକେ, ଦଅଁ ପ୍ରେମଧନ ନୀରବଦ୍ୟେ ଗୋ । ସଙ୍ଗିନ । ଜୟ ଶ୍ରୀ ରୁପମଞ୍ଜରି, ଜୟ ଶ୍ରୀ ରତିମଞ୍ଜରି, କସ୍ତୁରିକେ ତୁଲସିକେ ଜୟ । ଜୟ ଲବଙ୍ଗ ମଞ୍ଜରି, ରସରାଜ ସୁମଞ୍ଜରି, ବନ୍ଦି ଆମି ସବାର ପଦ ଦ୍ୱୟ ଗୋ । ସଙ୍ଗିନ । ୫ । ଯାବେ ଏ ଜଞ୍ଜାଳ ବପୁ, ପାବେ ପରକୀୟା ରସ, ଅଧିଷ୍ଠାତ୍ରୀ କିଶୋରୀ ଚରନ । ଅଗୋ ଚନ୍ଦ୍ରାବଲି ଭଦ୍ରେ, ଶ୍ୟାମଲାଦ ମହାଭଦ୍ରେ କରାଅ ଉଜ୍ଜ୍ୱଲ ରସେ ସ୍ନାନ ଗୋ । ସଙ୍ଗିନ । ୬ । ପ୍ରାନସଖି ପ୍ରିୟସଖି, ଅଗୋ ପ୍ରାନ ପ୍ରିୟସଖି, ପ୍ରିୟ ନର୍ମସଖି ଲ୍ରପସଖିଂ। ଅଗୋ ଯତ ପରଗୃହ, ମଞ୍ଜରି, ଲ୍ରପମଞ୍ଜରି, ପ୍ରେମାମୃତ ଦୟା କର ସୃଖି ଗୋ । ସଙ୍ଗିନ । ୭ । କିଶ୍ଚେର ପ୍ରିୟାଦ ବାଧା, ନିତ୍ୟ ସିଧା, ସାଧନ ସିଧା, ଶତକୋଟି ରାସ ବିଳସିତେ । ସବାର ପଦ ବନ୍ଦନ କରି, ଶ୍ରୀଚନ୍ଦନ ମଗ୍ନ ଭରି, ବସନ୍ତ ଉତ୍ସବ ଉଲ୍ଲାସିତେ ଗୋ । ସଙ୍ଗିନ । ୮ ।

ଦୁହା ।

ଶୁନ ଅଗୋ ସଖି ଭକ୍ତଗନା । ଦୟା ପ୍ରେମାନନ୍ଦେ ଉନମନା । ୧ ।
ବାସନ୍ତିକ ରାସ ମହୋତ୍ସବେ । ରାଧା ମାଟନେ ଗୋପି ତ୍ୟାଗ ହବେ । ୨ ।
କିଷ୍ଣ ଦିବ୍ୟୋନ୍ମାଦେ ମହାଭାବେ । ଯେ ଅଷ୍ଟ ନାୟିକା ବଇଭବେ । ୩ ।
କିଶୋରୀ ଚନ୍ଦ୍ରମା ଅନୁରାଗି । କଥାଂଚେ ଗୁରୁମାନ ତ୍ୟାଗି । ୪ ।
କାନ୍ତେ କାମଧେନୁ ଅନୁମତେ । ପ୍ରୋଷିତ ସ୍ୱାଧୀନଭର୍ତ୍ତୃକାତେ । ୫ ।
ପୂର୍ଣ୍ଣ ରାସୋ କୃଷ୍ଣ ଗୋପିଗନ । ଅନନ୍ତ ନବ ବୃନ୍ଦାବନ । ୬ ।
ଯମୁନାପୁଲିନ କୁଞ୍ଜବନ । ଶୁକ ସାରି ବନମୟ ସ୍ୱନ । ୭ ।
ଜୟଦେବ ଜୟ ଜୟ ଯୁକ୍ତେ । ଶୁନ ଅନୁରାଗି ଭକ୍ତବ୍ୟକ୍ତେ । ୮ ।
ଶ୍ରୀ ରୁପମଞ୍ଜରୀ ଯାର ଜାତି । ତାର ହବେ ଏଇ ରସେ ଭକ୍ତି । ୯ ।
ଲଲିତା ଅମାର କିପାମୟି । ଶ୍ୟାମଲା ଯୁଥେ ଈଶ୍ୱରୀ ହୋଇ । ୧୦ ।
ଶ୍ରୀ ରୁପମଞ୍ଜରୀ ପକ୍ଷପାତେ । ଶ୍ରୀରାଧା କିଶ୍ଚେର ଇଚ୍ଛା ହେତେ । ୧୧ ।
ବୃନ୍ଦାରାଣୀ ଅନୁଗ୍ରହ କୈଲ । ସ୍ୱପ୍ନେ ପ୍ରେମାବତୀ ଆଜ୍ଞାଦିଲ । ୧୨ ।
ପ୍ରେମଜ୍ଞାନୀ ଚକ୍ଷୁରନେ ଅନ୍ଧ । ଶ୍ରୀଚନ୍ଦନ କୈଲ ଗୀତବନ୍ଧ । ୧୩ ।

ପୟାର ।

ରସିକଶେଖର କୃଷ୍ଣ ପରମ କୃତୁନ । ଏଇ ଦୁଇ ରସେ ତୃଷ୍ଣ ଶ୍ରୀକୃଷ୍ଣ ଚୈତନ୍ୟ ହେ । ୧ । ଏମନ ଦୟାଲ ଗୋରା ପତିତପାବନ । ଦୀନ ଅକଞ୍ଚନେ ଯାଚି ଦିଲ ପ୍ରେମଧନ ହେ । ୨ । ପରୋକ୍ଷେ ଶ୍ରୀମୁଖେ ଅଜ୍ଞା ବହିଛେ ଆପନ । କା ବର୍ଣ୍ଣିଛେ ଭାଲମନ୍ଦ କିଛୁ ନାହିଁ ଜାନି ହେ । ୩ । ସାଧୁ ବୃନ୍ଦ ପଦେ କରି ଏହି ନିବେଦନ । ଯତ ଅଛେ ତର୍କି ବହୁ ଶାସ୍ତ୍ରବାଦ ଜନ ହେ । ୪ । ତାରା କର୍ଣ୍ଣଗତ କଭୁ ନା ହବେ କେବଲ । ଶୁନିତେ ଅନ୍ତର ଜଲେ ଅରସିକବର ହେ । ୫ । ବୋଲେ ଶ୍ରୀଚନ୍ଦନ ସର୍ବେ ବୋଲ ହରି ହରି । ଯୁଗଲ ମଧୁରରସେ ଯାବେ ବଲିହାରି । ୬ ।

ଶ୍ଳୋକଃ ।

ଶୃଙ୍ଗାର ରସ ସର୍ବସ୍ୱ ଶିଖିପୁଚ୍ଛ ବିଭୂଷଣଂ ।
ଅଙ୍ଗୀକୃତ ନରାକାରମାଶ୍ରୟେ ଜଗଦାଶ୍ରୟଂ । ୨୧୩ ।

ଯଥାରାଗ ।

ଜୟ ଜୟ ରାଧେ, ଜଗତ ଅଶ୍ରୟ, ଜଗତ୍ସ୍ୱରୂପେ ବନ୍ଦିତା ।
ତଦା ଶ୍ରୟେ କିଷ୍ଟ, ନିଖିଲ ନର୍ତ୍ତିକା, ହୃଦ ପ୍ରେମୋନ୍ମାଦେ ବନ୍ଦିତା ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୧ ।
ଜୟ ଜୟ ରାଧେ, ଶୃଙ୍ଗାର ସୁରସ, ସର୍ବଦା ଶ୍ରୀକୃଷ୍ଣ ଦାଇନି ।
ଚନ୍ଦ୍ରିକା ଚନ୍ଦ୍ରକ, ମଣ୍ଡନ ସୁସ୍ନେହ, ଚନ୍ଦ୍ରକ ମସ୍ତକସ୍ଥାପିନି ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୨ ।
ଅଙ୍ଗୀକୃତ ଭରେ, ପ୍ରେମେର ନିର୍ଭରେ, ଲମ୍ପଟ ନାଗର ଭୂପତି ।
ଶତକୋଟି ଗୋପୀ ତବାଂଶ ମଧପ, ପ୍ରକଟ ବିଲାସ ସମ୍ପତ୍ତି ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁ ସୁତା ଗାନ୍ଧର୍ବିକେ ଗୋ । ୩ ।
ଜୟ ଜୟ ରାଧେ ଜଲଦ ସୁନ୍ଦର, ଦିବ୍ୟ ବକ୍ଷସ୍ଥଲେ ମଣ୍ଡିତେ ।
ଦୀନ ହୀନ ଶିରୀ-ଚନ୍ଦନ କି ତାପ, ହରତୁ ଦୁର୍ଗତି ତାରତେ ।
ଜୟ ଜୟ ଶ୍ରୀରାଧିକେ, ବୃଷଭାନୁସୁତା ଗାନ୍ଧର୍ବିକେ ଗୋ । ୪ ।

ଶ୍ଳୋକଃ ।

ପଦ୍ମାପୟୋଧରତଟୀ ପରିରମ୍ଭଲଗ୍ନ ।
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ॥
ବ୍ୟକ୍ତାନ—ରାଗମିବ ଖେଲ ଦନଙ୍ଗ ଖେଦ ।
ସ୍ୱେଦାମ୍ବୁପୂର ମନୁପୂରୟତୁ ପ୍ରିୟଂ ବଃ । ୨୨ ।

ପୟାର ।

ପଦ୍ମବାସୀ ପଦ୍ମମୟୀ ପଦ୍ମ ଶ୍ରୀ କଣ୍ଠଶୋଭା । ଅବିକଳ କଳଧୌତ ଗୋରଚନା ଗୋର ଗୋ ॥ ୧ ॥ ଉଚ୍ଚକରିକୁମ୍ଭ ପୟୋଧର ତଟ । କୁନ୍ଦନ ଶ୍ରୀଫଳଦ୍ୱୟ ସମ୍ୟକ ସଂଘଟ ଗୋ ॥୨॥ କିମ୍ବେତର କରସାରେନ ସ୍ୱର୍ଣ୍ଣ ବେଲଫଳ, ନବୀନ କୁଙ୍କୁମପଙ୍କେ ସମଲ ପଙ୍କିଲ ଗୋ ॥୩॥ ତାହେ ତଟ ଲଗ୍ନ ମଗ୍ନ ପରିରମ୍ଭକର, ସେଇ କିମ୍ବା ହ୍ରଦ ସର୍ବା କାଶ୍ମୀରଗଭର ଗୋ॥୪॥ ମଧୁରରସ ମଧୁର ଆସ୍ୱାଦନ କର; ମଧୁସୂଦନେର ଶଦେ ଶ୍ରୀକୃଷ୍ଣ ଭ୍ରମର ଗୋ ॥୫॥ ବର୍ଷ୍ୟନ୍ତ ଅନୁରାଗ ନୀଳ ଖେଳନ୍ତେ ପ୍ରମତ୍ତ । ଅନଙ୍ଗେର ପ୍ରାନ୍ତେ ଅଙ୍ଗେ ସ୍ୱେଦବିନ୍ଦୁ ଜାତ ଗୋ ॥୬॥ ଯେନ ନୀଳପଦ୍ମପାତେ ବିନ୍ଦୁ ବିନ୍ଦୁ ଜଲ, ତମାଲଦଳେ କି ଫଳେ କ୍ଷୁଦ୍ର ମୋତିଫଳ ଗୋ ॥୭॥ ସେହି ଡନୁ ଶ୍ରୁତି ହବେ କବେ ଏ ନୟନେ, ବୋଲେ ଶ୍ରୀ ଚନ୍ଦନ ଦଗ ଦାସୀ ଭକ୍ତଗଣେ ।

ପୟାର ।

ଶ୍ରୀନାରଦ ପାଦତଲେ କରି ନିବେଦନ, ଭାବେ ଗଦଗଦ ହୟେ । କୁବେର ନନ୍ଦନ ହେ ॥୧॥ ଓହେ ମୁନିବର ତୁମି ପ୍ରେମେର ବାଦଲ, ଶ୍ରୀରାଧା ଶ୍ରୀକୃଷ୍ଣ ଲୀଳାମୃତ ବୃଷ୍ଟି କୈଲ ହେ ॥୨॥ ମନେରି ପ୍ରବଲ ତାପ ହୈଲ ପରାଜୟ, ଅବେ ଯେଇ ପୁଚ୍ଛି ଅଜ୍ଞା ହବେ ମହାଶୟ ହେ ॥୩॥ ବାତ୍ସଲ୍ୟାଦି ପୂର୍ବଭାଗ କୈଲ ବର୍ଣ୍ଣନ, ଚନ୍ଦ୍ରାବଲୀ ଶ୍ରୀମତୀର ହଇଲ ମିଲନ ହେ ॥୪॥ ଲଲିତା ସେବ୍ୟାଦି ସଖି ସକଲି ମଞ୍ଜରୀ, ଭଦ୍ରା ଶ୍ୟାମଲାର ଆର ଯତ ଯୂଥେଶ୍ୱରୀ ହେ ॥୫॥ ସପକ୍ଷ ବିପକ୍ଷ ଆର ସୁହୃଦ ତଟସ୍ଥ । ନିଜ ନିଜ ଗୁଣ ଗର୍ବେ ଗାମ୍ଭୀର୍ଯ୍ୟ ଉତ୍କଟସ୍ଥ ହେ ॥୬॥ କେମନ ସମାନ ପ୍ରେମେ ଦେଖା କୃଷ୍ଣଦନ୍ଦ, ଶ୍ରୀବୃନ୍ଦାବନେ ବସନ୍ତ ରାସ ଆରମ୍ଭିଲା ହେ ॥୭॥ ଚମତ୍କୃତ କିଶୋରୀ ଲୀଳା ପୂର୍ଣ୍ଣବ୍ରହ୍ମ କୃଷ୍ଣ, ପ୍ରେମ ଭକ୍ତି ଉପାସନେ ତୁମି ସଦା ତୃଷ୍ଣ ହେ ॥୮॥ ତୋମାର କି ପାଁତେ ଆମି ହଇଛେ ପାବନ, ଦରଶନ କୈଲ ବ୍ରଜେ ବ୍ରଜେନ୍ଦ୍ର ନନ୍ଦନ ହେ ॥୯॥ ଅମିତ କ୍ଷୁଧାର୍ତ୍ତି ଜନ, କିଛୁ ନାହିଁ ଜାନ, ଖାଓୟାବେ ତୁମି ତାର ଲୀଳାମୃତ ଅନ୍ନ ହେ ॥୧୦॥ ଓହେ ଧନପତି ସୁତ ତୁମି ଭାଗ୍ୟବାନ୍ । ତୁମାର ପ୍ରସଙ୍ଗେ ଉଦେ ଲୀଳାମୟ ଜ୍ଞାନ ହେ ॥୧୧॥ ଯାର ଲୀଳା ଶେଷ ମୁଖେ ଲେଶ ଶେଷ ନଏ, ତାର ଲୀଳା ବର୍ଣ୍ଣିବାର କାର ଶକ୍ତି ହଏ ହେ ॥୧୨॥ ହେ ନଳ କୁବେର ମୁନି କହିବ ଦ୍ୱୟ ଶୁନ; ଅତି ଗୁଢ଼ ଅଟେ ଗୀତଗୋବିନ୍ଦ ବ୍ୟାଖ୍ୟାନ ହେ ॥୧୩॥ କତ କାବ୍ୟ କତ ଶାସ୍ତ୍ର କତ ଅଲଙ୍କାର, କତ କତ ନାଟକାଦି ଅଛେ ଏ ସଂସାର ହେ । ଆବର ପୁରାନ କତ ଅଛେ ନାହିଁ ଅନ୍ତ, ତାର ମଧ୍ୟେ ସାର ଗୀତଗୋବିନ୍ଦ ଚରିତ ହେ ॥୧୫॥ ମହାକାବ୍ୟ ସ୍ୱରୂପ ଏ ଗୀତଗୋବିନ୍ଦ, ଇହାର ଶ୍ରବଣେ ମିଲେ ପ୍ରେମ ଭକ୍ତି କନ୍ଦ ହେ ॥୧୬॥ ଏକମନ ହୟେ । ଏବେ ଶୁନ ମୁନିଜନ, ଆମି କି କହିବ

କିନ୍ତୁ ଲୀଳାର ବର୍ଣ୍ଣନ ହେ ।୧୭। ତଥାପି ତାହାର କିପାଏ ଲେ ଯେଉଁ ଜାନି, ଅବ ପିତା ମୁଖୁ ଆମି ଯତ ଅଛେ ଶୁନି ହେ ୧୮ । ବୃନ୍ଦାର କିପାତେ ଯେଉଁ ଶୁନି ଅଛେ ଜାନା, ତାଏବଲି ଶ୍ରଦ୍ଧାମୟ୍ ହୟ୍ ଦ୍ରବ୍ୟଜନା ହେ ।୧୯। ତୁମାକେ କହବ ଅମି ସୂତ୍ର ଅନୁସାରେ, ବସନ୍ତ ବିହାର କିଞ୍ଚିତ୍ର କହବୀ ତୁମାରେ ହେ ।୨୦। ଯାମଲା ଅର୍ଜ୍ଜୁନ ରୁପେ ତୁମି ଗୋପେ ଛିଲ୍, କିନ୍ତୁ ତୁମାରେ କତକାଲ ଦୁଃଖେ ଦଣ୍ଡ ଭ୍ବଲ ହେ ।୨୧। ତାର ପଦ୍ମପାଦେ ଭୃଙ୍ଗବତ୍ ସ୍ଵଖୀ ଚତ୍ତ; ଶ୍ରୁତି ମୁଖେ ପାନକର ସେ ଚରିତାମୃତ ହେ ।୨୨। ଚଞ୍ଚଲ ଚିତ୍ତ ଅଯ୍ଦବର କରହ ଶ୍ରବନ; ଅଇଲ ବସନ୍ତ ରାଜ ନବ ବୃନ୍ଦାବନ ହେ ।୨୩। ବୋଲେ ଶ୍ରୀଚନ୍ଦନ ଏବେ ସର୍ବେ ହରିବଲ, ଯୁଗଲ ମଧୁର ରସେ ହଇଯ୍ା ବାଉ୍ଲ ହେ ।୨୪।

ପୟାର ।

ଶୁନ ଗୋ ପ୍ରାଣସଙ୍ଗିନୀ ସଖି ଭକ୍ତଗନ, ଶ୍ରୀ ଗୀତଗୋବିନ୍ଦ ସୂତ୍ର ମୂତୁଲ ବର୍ଣ୍ଣନ ଗୋ । ୧ । କାଷ୍ଠମୁଖେ ଯେମନି ଅକ୍ଷର ଅଚମ୍ବିତ; ତେମନି ନାଜାନି ଅମି ଛ ହବେ ଲିଖିତ ଗୋ । ୨ । ଓହେ ନିର୍ମ୍ମଳଙ୍କ ଜନା ଦିବେ ପଦଧୂଲା; କିତାପ ମଗନେ ଶିରୀଚନ୍ଦନ ବାଉ୍ଲା ଗୋ । ୩ ।

ଦୂହା ।

ଶୁନ ଓହେ ସଖି ଭକ୍ତଗନ, ବସନ୍ତ ରାସ ଲୀଲା ବର୍ଣ୍ଣନ । ୧ ।
ଏ ଲୀଲା ବର୍ଣ୍ଣନେ ହରେ ଦୁଃଖ, ଅନ୍ତରେ ଛୁଟଇ ଭବ ଶୋକ । ୨ ।

---

## ପ୍ରଥମ ଛାନ୍ଦ

ପୟାର ।

ଅଇଲେ ବସନ୍ତ ରାଜ ଶ୍ରୀବୃନ୍ଦା କାନନ, ମଲୟ ପବନ ବହେ ଅମୋଦ ବର୍ଦ୍ଧନ ହେ । ୧ । ବୃକ୍ଷଲତା ପଲ୍ଲବିତ ଶୋଭା ପ୍ରକାଶିଲ; ବନ ଭୂତ ଭ୍ରାନ୍ତି ବୃଦ୍ଧି ହୈଲ ପରିମଲ ହେ । ୨ । ସୁରଙ୍ଗ ପଲ୍ଲବ ଶୋଭା ସବ ଦ୍ରୁମ ପରେ, କି ଅବା ସିନ୍ଦୁର ବୃଷ୍ଟି ଦ୍ଵାଦଶ ବନରେ ହେ । ୩ । ଜାତି ଯୁଥି ପ୍ରଫୁଲ୍ଲିତ ମଲ୍ଲି ବିକସିତ; ମାଲତୀ ମାଧବୀ ଫୁଟି ଗନ୍ଧ ପ୍ରସାରିତ ହେ । ୪ । ସୁନାର ସୁ-ନାସା ପର ପ୍ରଭା ପ୍ରକାଶିଲା; ପାଟଲୀ ବୃକ୍ଷେର ରଙ୍ଗ ଶାଡ଼ି ଦେ ବାନ୍ଧିଲା ହେ । ୫ । ଅଶୋକ ଅ-ଶୋକ କରେ ନାଗରୀ ନାଗର, ଚ୍ୟୁତ ବକୁଲ ସକୁଲ ଭ୍ରମର ଝଙ୍କାର ହେ । ୬ । ନବମାଲ୍ଲିକା ମାଲତୀ ଅଳିକା ଦେଖନ୍ତ; ମାନିନୀର ମାନହନ୍ତ ଜ୍ୟୋତ ପ୍ରକାଶନ୍ତ ହେ । ୭ । ବଞ୍ଜୁଲ ମଞ୍ଜୁଲ ତନୁ ବାସ ପ୍ରକଟିତ. ଅରବିନ୍ଦେ ତଂଶାହେ ଦେଖ ଭୃଙ୍ଗେର ଝଂକୃତ ହେ । ୮ । ନିଲୋତ୍ପଲ ଅବଲନ ଦୀପ୍ତି ପ୍ରକଟିଲା, ଅନଙ୍ଗ ଅନଲ ପରି ଉଲ୍ଲାସ ଦର୍ଶିଲା ହେ । ୯ । ଅର୍ଦ୍ଧଚନ୍ଦ୍ର ପଞ୍ଚ

ବନ୍ଦ ଭଙ୍ଗିମା ରଞ୍ଜିତ, ବନସ୍ପତି ସୁବ୍ରତରେ କବା ନଗ୍ନ ଷଣ୍ଢ ହେ । ୧୦ । କାମ କ୍ରୀଡ଼ା ଭରେ କି ବସନ୍ତ ବହୁଗଲେ; ବିରହିଣୀ ମାନସରେ ବଜ୍ରପାତ ହେଲ ହେ ।୧୧। ସର୍ବ ଲତା ପୁଷ୍ପବନ୍ତ ଦେଖି ମଧୁକର, ଉନ୍ମତ୍ତେ ଉନ୍ମତ୍ତେ ବସି ହାଇଲ ବିଭ୍ରେର । ୧୨ । କବା ଋତୁରାଜ ଅଗ୍ରେ ଭେର ବାଦନ୍ କରେ, ବିକାଶ କିଂଶ କୁସୁମ ଗ୍ରମର ପ୍ରସରେ ହେ । ୧୩ । ନାଗେଶ୍ୱର ପ୍ରଫୁଲ୍ଲିତ ଛବ ସୂକ୍ଷ୍ମ ପତ୍ର, ମଧୁଲିଟ ସ୍ୱନ କଏ ବାଦନ ନାଗର୍ ହେ । ୧୪ । କୋକିଲ ମଧୁର ଗାନ ଏ ବାର ଛାଡ଼ାଲ୍, ଝଙ୍କାର ଝଙ୍କାର ରବ ଦଏ ହୁଲହୁଲ୍ ହେ । ୧୫ । ସର୍ବ ପକ୍ଷୀନ୍ଦ୍ର ବାଜି ଘଣ୍ଟକ ଏ ବାର୍, କୁନ କୁନ ଲତା ବୀରବେଶେ ପରଗୃର ହେ । ୧୬ । ସୁନାସି କି ନଲ୍ଲି ଧର ଉନ୍ମତ୍ତେ ବାହୁର, ନାଗେଶ୍ୱର କଲ୍ କବା ଗୁଲ୍ ଯୋଖା ଅର ହେ । ୧୭ । ଉଡ଼ ପରାଗ ରଞ୍ଜନ ବନ ପ୍ରମୁରତ, ବିରହିଣୀଗଣ ମାନେ ନା ରହେ ଜୀବିତ ହେ । ୧୮ । ଋତୁରାଜ ପ୍ରଭୁ ଦେଖି ଚନ୍ଦ୍ରେ ହରଷିତ, ଦ୍ୱିଜରାଜ ବନଭୂମି ମାନେ ସୁବିଦିତ ହେ । ୧୯ । ଯମୁନାର ବାଲ୍ ଦଣେ ଡେକେ ଝଲମଲ; କାଲିନ୍ଦରେ ପଶି ସ୍ଥିତ ମଲୟ ପ୍ରବଲ ହେ । ୨୦ । ପୁଷ୍ପବନେ ପ୍ରବେଶି ଅଁ ଗନ୍ଧ ହରିନଲ, ଉପବନ ବୃକ୍ଷେ ବାଜି ମନ୍ଦ ମନ୍ଦ ହେଲା ହେ । ୨୧ । ମିତ୍ରର ରାଜତ୍ୱ ଦେଖି କନ୍ଦର୍ପରାଜନ, ଅନନ୍ଦରେ ଅସି ପରବେଶ ମଧୁବନ ହେ । ୨୨ । ବ୍ରଜାଙ୍ଗନାଭୂରୁ ଅଂଦ ଧନୁ ଅଙ୍କର୍ଷିଲ, ଭୃଗୁପତିଗୁନ ତଥି ଶୀଘ୍ରେ ଚଢ଼ାଇଲ ହେ । ଅରବିନ୍ଦ ଅଶୋକାଦ ଚୂତ ନୀଳୋତ୍ପଲ, ନବମାଳକାଦ ପଞ୍ଚଶର ଯୋଖନ୍ କଲ ହେ । ୨୪ । ଘନ ଘନ ବନେ ଧ୍ୟାନ ବିରହ ମାଇନେ, ମଦନ ଚ୍ଛଟା ହେଲ୍ ନବ ବୃନ୍ଦାବନେ ହେ । ୨୫ ।

ଦୁହା ।

ନାନା ପୁଷ୍ପ ବିକଶିଲ୍ । ବହୁ ଅମୋଦିତ ହେଲ୍ । ୧ ।
ନାନା ପକ୍ଷୀ କୋଲାହଲ୍ । ଶୁଭେ ଘଣ୍ଟକ ଏ ଢାର । ୨ ।
ବିରହିଣୀଗଣମାନେ । ଉନ୍ମତ୍ତ ହେଲ ମଦନେ । ୩ ।
ରାସ କେଳ ଭାବ ମନ । ବୋଲେ ସଖି ଶ୍ରୀଚନ୍ଦନ । ୪ ।

ଚୌପଦୀ ।

ବ୍ରଜ ମଣ୍ଡଳରେ, ନାଗରୀ ମନରେ, ପଡ଼ିଲ କାମେର ଡୁର ହେ ।
କେଳ୍ ସୁରସରେ, ନାଗରୀ ସଙ୍ଗରେ, କେମନ୍ତ ହବେ ବିଗ୍ରହ ହେ ।
ସବେ ବିରହେ ଅକୁଲ; ପ୍ରେମଭକତ ହେଲ ମତୁଅଲ ହେ । ୧ ।
ନବାଙ୍ଗନା ଯୂଥ, ଧନ୍ୟା [illegible], [illegible] ବ୍ରଜ ବାର ହେ ।
ଗଉରୀ ପୂଜନେ, ଭାବ ମନେ ମନେ, ନନ୍ଦନନ୍ଦନଙ୍କେ ହେବ ହେ ।

ସ୍ତୁତ ଭବାନୀ ଅଗ୍ରରେ, ବର ଦାଅ ଏ ନନ୍ଦ କୁମରେ ଗୋ । ୨ ।
ଏମନି ଅକୁଳ, କେତଦୂର ଗେଲ, ଯୋଗମାୟା ଦୟା କୈଲ ହେ ।
ବ୍ରତ ପୂଜା ସାର, ସେ ସବ ନାଗରୀ, ବେଶ ଭୂଷନ ହଇଲ ହେ ।
ଫେରେ ବୃନ୍ଦାବନ ମାଝେ, ଦେଖେ କାନନ ଶୋଭା ବିରାଜେ ହେ । ୩ ।
ଯମୁନା ତଟରେ, କାନ୍ତ ଧ୍ୱଜଟରେ, କୁସୁମ ପ୍ରଫୁଲ୍ଲ ଅତି ହେ ।
ମିଳି ଭୃଙ୍ଗ କୁଳ; ନିସ୍ୱନ ସଙ୍କୁଳ; ପ୍ରେମେ ଫୁଲ ଫୁଲେ ମାତି ହେ । ୪ ।
ବହେ ମଲୟ ମରୁତ, ପିକ କୁହୁଃ ରବରେ ପୂରିତ ହେ ।

ଝୋଲ ।

ନବ ବସନ୍ତ ସମୟ । ନବ ବୃନ୍ଦାବନ ରସମୟ ହେ । ଘୋଷା ।
ମଲୟ ଅଚଲ, ସମିତ ପ୍ରଚଳ; ଦକ୍ଷିନ ପବନ ବହିଲ ।
ତରୁ ଲତା ସବ, ନୂତନ ପଲ୍ଲବ; ରସାଲ ମୁକୁଳ ଧଇଲ । ୧ ।
ନବ ମାଧବିକା, ମଧୁପ ଜୀବିକା ମଲ୍ଲି ବଲ୍ଲି ଫୁଟିଲ ।
ନିଅଲ କମଲ, ନିଲ ଉତପଲ, ଗନ୍ଧ ଗନ୍ଧବହ ଧଇଲ । ୨ ।
ସକଲ ପଲାସ, ନାସିଅ ପଲାସ; କୁସୁମେ ଉଲ୍ଲାସ ହଇଲ ।
ନିକୁଞ୍ଜ ଭୁବନେ; ରମ୍ୟ ଚୂତବନେ; କୋକିଲ ପଞ୍ଚମ ଗାଇଲ । ୩ ।
କୋକିଲ ସମୀରେ, ମୃଦୁ କମ୍ପନରେ, ଲଲିତ ଲବଙ୍ଗ ଲତିକା ।
କାନ୍ତେର ତକ୍ଷନେ, କରଜେ ଯେମନ, ରମନି ମୃଦୁଲ ସିଞ୍ଚିକା । ୪ ।
ମତ୍ତ ମଧୁକର, କରଅି ଝଙ୍କାର, ଅଶୋକ ପ୍ରଫୁଲ୍ଲେ ଘେରିଲ ।
ବୋଲେ ଶ୍ରୀଚନ୍ଦନ, ନନ୍ଦେର ନନ୍ଦନ, ଏହେନ ସମୟେ ହେରଲ । ୫ ।

ଦୀର୍ଘଛନ୍ଦ ।

ଏ ହେନ ସମୟ ହେର, ଶ୍ରୀ ବିଶାଖା ସହଚରୀ, କୃଶୋଦ୍ରୀ ଚରନେ ଜଣା-ହିଲ । ଶୁଣ ବିନୋଦିନୀ ଧନି, ବସନ୍ତ ମଦନ ଘେନି, ନବ ବୃନ୍ଦାବନେ ପ୍ରବେଶିଲ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୧ । ଦ୍ୱିଜରାଜ ଋତୁ-ରାଜ; ସହାୟରେ କାମରାଜ; ଚକ୍ରବର୍ତ୍ତୀ ହୈଲ ବୃନ୍ଦାବନେ । କୋକିଲ ଡାକଅ ଡାକେ; ପଥିକ ନିକର ଶଙ୍କେ; ନବ ବିରହିନି ହୃଦ ହାନେ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୨ । ନବକିଶଳୟ କୁଳ; ସୁରଙ୍ଗ ପତକା ତୁଲ; ଅକୁଲ କରିଲ ବିଯୋଗିନୀ । ଶୁକ ପୁଞ୍ଜ ଯୋଗ ରତ; ମତ୍ତ ଭୃଙ୍ଗର କୁଜିତ; ସକଲ ପାଦାନ୍ତ ମୁଖ ଧ୍ୱନୀ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନୀ ଗୋ । ୩ । କଳେ ଫୁଲ ଧନୁ ଲୟି ଭ୍ରମରେର ଗୁନ ଦୟି; ଝଙ୍କାର ନିନାଦେ ଟଙ୍କାରିଲ । ଅଶୋକ ଚୂତ ଉମଳ; ନିଅଲ ନୀଲଉତ୍ପଲ; ପଞ୍ଚବାଣ ସନ୍ଧିକୋଧ

ହେଲ ଗୋ । ଧନ୍ୟ ଗୋ । ନା ହବେ ମୋହନେ ଅଭିମାନ ଗୋ । ୪ । ମୁକୁଳ ଭ୍ରମର କୁଳ, ଉତ୍ଫୁଲ୍ଲ ମନ୍ଦଅନିଲ, ହେବଯ୍ୟିଁ ବଦେଶୀ ଜନବୃନ୍ଦେ । ନାଗେ-ଶ୍ବର ପୁଷ୍ପଗୋଳ ପ୍ରବଳ ଧବଳି ଛଳ, ପଲ୍ଲବ ପତାକା ସହ ଉଡ଼େ ଗୋ । ଧନି ଗୋ । ନା ହବେ ମୋହନେ ଅଭିମାନ ଗୋ । ୫ । ଦନ୍ତରୁ କେତକୀ ଲୁନ୍ତ, ଛୁରି ଛୁରିଅନାମତ, ନବମାନୀବାଦ ତାର କାଛେ । ଦମ୍ଭ ସଖି ଧୈର୍ଯ୍ୟଭରେ, ତାଙ୍କୁ କି କରିତେ ପାରେ, ଆମାର ମୋହନରାଜ ଅଛେ ଗୋ । ଧନ୍ୟ ଗୋ । ନା ହବେ ମୋହନେ ଅଭିମାନି ଗୋ । ୬ ।

ଦୀର୍ଘଛନ୍ଦ ।

ସଖୀର ବଚନ ଶୁନି, ଆବେଶ ବର୍ଦ୍ଧିନ ଧନୀ; ପ୍ରାଣନାଥ ସଙ୍ଗ ଇଚ୍ଛା କେଲ । ହେନ ବେଳ ଚନ୍ଦ୍ରାବଲୀ, ପାଶେ ସେବ୍ୟାସଖି ମିଳି, ବସନ୍ତ ସୌଭାଗ୍ୟ ବବରଲ ଗୋ । ସଖି ଗୋ । ଗୌରି ପୂଜା ପାବ ନୀଳମନି ଗୋ । ୧ । ଭଦ୍ରା ଶ୍ୟାମା କାମା ପ୍ରେମା; ନବ ଅନୁରାଗଧାମା, ଧନ୍ୟା କନ୍ୟା ସହ ବ୍ରଜାଙ୍ଗନା । ଯତନେ ଚେତନା ଭୁଲି, ପଠନେ କୁସୁମଧୂଳି; ସକଲ ହଇଲ ଛନମନା ସେ । ସେ କାଲେ । ସକଲ ହଇଲ ଛନମନା ଗୋ । ୨ । କି ସ୍ତୋତ୍ର ପ୍ରିୟ୍ବାଦ ବଧା, ନିତ୍ୟ ସିଧା ସାଧନ ସିଧା; ସ୍ତୁତିରଶ୍ମି ମୁନିଚରି ଯତ । ଲଯ୍ୟିଁ ନୀଳମନି ମାଲ, ଜପନ୍ କରେ କାଲକାଲ, ବୋଲେ ଶ୍ରୀଚନ୍ଦନ ସବେ ମତ୍ତ ସେ । ସେକାଲେ । ବୋଲେ ଶ୍ରୀଚନ୍ଦନ ସବେ ମତ୍ତ ଗୋ । ୩ ।

ରାଗ ବଙ୍ଗଲାଶ୍ରୀ ।

ଜାବେର ବାସର, ଚଇତ ମାସର, ଶୁକଲ ପୂର୍ଣ୍ଣିମୀ ହଇଲ ।
ଲଇଁଅଁ ସୁବଲ, ସୁମଧୁମଙ୍ଗଲ, ମୋହନ କାନନେ ଅଇଲ ।
ଘନଶ୍ୟାମସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୧ ।
ହେରେ ଫୁଲବନ, ପୁଲିନ କାନନ, ବସନ୍ତ ସୁଷମା କରିଛେ ।
ଅବନୀର ମାଝେ, ବାଲୁକା ସମାଜେ, ମକରନ୍ଦ ରଜ ଝରିଛେ ।
ଘନଶ୍ୟାମସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୨ ।
ତରୁ ଲତାକୁଲ, ପଲ୍ଲବେ ମଞ୍ଜୁଲ, ଚହଟେ ମଲୟ ଅନିଲ ।
ପିକ ଭୃଙ୍ଗନାଦ, ଶ୍ରବଣେ ପୁରିତ, ମଦନେ ଉଦ୍ଦୀପ ମାନିଲ ।
ଘନଶ୍ୟାମସୁନ୍ଦର । ଦେଖେ ବୃନ୍ଦାବନ ମନୋହର ହେ । ୩ ।

ଦୁହା ।

ରସିକଶେଖର ନୀଳମନି । ତବେ ମଧୁକେ ବୋଲଇ ବାନି । ୧ ।
ଦେଖ ଦେଖ ସଖେ ହେ ବୃନ୍ଦାବନ । ତମାଲକାନନ ଶୋଭବନ । ୨ ।

ଋତୁରାଜ ଶ୍ରୀହ ବାନାଯ୍ୟେଛେ । ବସନ୍ତ କୋକିଳ ସାଥି ହୈଛେ । ୩ ।

ରାଗ ବଙ୍ଗଲାଶ୍ରୀ ।

ମହା ନିର୍ମ୍ମଲ, ଶୁଦ୍ଧ ଝଲ ମଲ, ଶୁକ୍ଳଚର ରଜନୀ ହଇତେ ।
ବସନ୍ତ ଉତ୍ସବ, ଅମି ଆରମ୍ଭିବ, ସବ ବ୍ରଜବଧୂ ସହିତେ ।
ଘନଶ୍ୟାମଲସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୧ ।
ମଧୁ ବୋଲେ ଭଲ, ପ୍ରସନ୍ନ ହଇଲ, ତୁମାକେ ଅବଲ୍ଲ ଜନିବେ ।
ଖେଲ୍ଲ ଲୀଲା ରଙ୍ଗେ, କାମେର ତରଙ୍ଗେ, ଆମାର ବଚନ ମାନିବେ ।
ଘନଶ୍ୟାମଲ ସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୨ ।
ସଖୀ ବାନି ଶୁନି, ହାସି ନୀଲମନି, ଅପନା ମନ୍ଦରେ ପ୍ରବେଶ ।
ଶ୍ରୀଚନ୍ଦନ ବୋଲେ, ଶ୍ୟାମ ହେନକାଲେ, ସଦନେ ସୁବେଶ ଅବେଶ ।
ଘନଶ୍ୟାମଲସୁନ୍ଦର । ଦଖେ ବୃନ୍ଦାବନ ମନୋହର ହେ । ୩ ।

ପୟାର ।

ମଦନମୋହନ କୃଷ୍ଣ ନନ୍ଦେର ଦୁଲାଲ, ଭୁବନ ମୋହିତେ ନଟବରବେଶ ହୈଲ ହେ । ୧ । ମଦନମଦେ ଘୂର୍ଣ୍ଣ ପୂର୍ଣ୍ଣ ନେତ୍ରାନ୍ତ ବଙ୍କିମା । ଚଞ୍ଚଲ ଅଞ୍ଚଲ ଛଟା ତରଙ୍ଗ ରଙ୍ଗିମା ହେ । ୨ । ଅଙ୍କ ହୀନ ପୂର୍ଣ୍ଣଚନ୍ଦ୍ର ବଦନ ପ୍ରକାଶ । ଭସ୍ମ-ହୀନ ବିମ୍ବାଧରେ ମନ୍ଦ ମନ୍ଦ ହାସ ହେ । ୩ । ଭାଲପଟେ ଖେଲ୍ଲ କରେ ଭୁଲତା ଭୁଜଙ୍ଗି । ପତିବ୍ରତା ବ୍ରତ ବିଧ୍ୱଂସନେ ହୈଛେ ତଙ୍ଗି ହେ । ୪ । ଶଭ୍ରପରେ ଶୋଭା ପାଏ ମୟୂରେର ପୁଚ୍ଛ । ଶିଖାଶ୍ରୀ କେତକୀ ପିଛେ ନାଗେଶ୍ୱର ସ୍ୱଚ୍ଛ ହେ । ଭାଲେ ନାଲ ଗୁଲାଲେର ବିନ୍ଦୁଏ ଶୋଭନ । କାଲମେଘେ ଉଦେ କି ବା ହଇଲ ଅରୁନ ହେ । ନାସେ ଗଜମୋତି ନାଶେ ରମ୍ଭା ଉମା ଦମ୍ଭ । ଗଲେ ବନମାଲ୍ଲ ନବବାଲ୍ଲ କରେ ସ୍ତମ୍ଭ ହେ । ୭ । ଅମଲ କମଲ ପାଦେ ଧ୍ୱନିତ ନୁପୁର । ତଡ଼ିତ ସୁନ୍ଦର ନବ ଜଡ଼ିତ ଅମ୍ବର ହେ । ୮ । ନିନ୍ଦେ ଇନ୍ଦ୍ର ନୀଲମନି ରସାନେର ଫୁଲ । ଅଯୁଧ ହୟାଛେ କରେ ମୋହନ ମୁରଲ୍ଲ ହେ । ୯ । ସଙ୍ଗି ଗୋପୀ ଅଭିବାହି ଧନ୍ୟା କନ୍ୟାଗନ । ନତବୃତେ କାତ୍ୟାୟନୀ ହୟା ସୁପ୍ରସନ୍ନ ହେ । ୧୦ । ବର ଦୟାଁ ଛଲେ କିଷ୍ଣ ପତି ହବେ ବୋଲ । ପ୍ରାପ୍ତି ବିନେ ରାତ୍ରି ଦିନେ ଦୁଃଖି ସେ ସକଲ । ୧୧ । ତାର ମନବାଞ୍ଛା ଜାନି ବ୍ରଜେନ୍ଦ୍ରନନ୍ଦନ । ଗେଲ ନବ ବୃନ୍ଦାବନେ ଯମୁନାପୁଲ୍ଲନ ହେ । ୧୨ । ଫୁଲ୍ଲନେ କଦମ୍ବତଲ୍ଲ ଆପନି କୈଲେ ବିଜେ । କତ ଶତକୋଟି ମନମଥ ଶୋଭା ସାଜେ ହେ । ବୋଲେ ଶ୍ରୀଚନ୍ଦନ ମନମୋହନ ଅଧରେ । ସାଜାୟାଁ ମୋହନ ବାଁଶୀ ବାଜାଏ ସୁସ୍ୱରେ ହେ । ୪ ।

ଦୀର୍ଘଛନ୍ଦ ।

ମୋହନ ମୁରଲୀ ଧ୍ୱନି, ପାଶୋନ୍ତ ତରଲ ପାନି; ଉରନ୍ତି ହରିଲ ବନମାଝେ । ଅଧ ମଧ୍ୟ ଉର୍ଦ୍ଧ୍ୱ ଖେଦ, ମରମ ସରମ ଭେଦ; ହରିଲ ମୋହନ ଦୀକ୍ଷା କାଯେ ରେ । ବାଁଶୀ ବାଜିଲରେ । ପୂଲିନେ କଦମ୍ବ ତରୁତଳ ରେ । ୧ । ଏହି ବେଳେ ସେଇ ସବ କନ୍ୟା ଜଲ୍ପିତ ବୈଭବ, ଉଦାତ୍ତ ଉଦାନ ମୃଦୁ ଦ୍ୱୟ । ବସନ୍ତ ସମୟ ହେଉ, ବଟୁର ଖେଳିବେ ହୋଉ; ଅଲି ଶବିନେ ତେଜି ଭୟ ରେ । ବାଁଶୀ ବାଜିଲ ରେ । ପୂଲିନେ କଦମ୍ବତରୁ ତଳରେ । ୨ । ମାଧବୀ ଲବଙ୍ଗ କାନ୍ତି, ମଲ୍ଲିକା ଫୁଲକା ତଥି, ପବମଲ୍ଲ ଶମଲ୍ଲ କମଲ୍ଲ । ସୁଶୀଳ ସୁପ୍ରେମଶୀଳ, ସଗନ୍ଧ-ମାନରସିଲ: ଶୋଭା ବହୁ ସକଳ ଅବଲରେ । ବାଁଶୀ ବାଜିଲ ରେ । ପୂଲିନେ କଦମ୍ବ ତରୁ ତଳରେ । ୩ । ମଦନ ମାଦକେ ପୂର, ବହୁଅଁ ଗୁଞ୍ଜିଲ ହୋଉ, ଅବାରନେ ବନେ ବନେ ଡୁଲେ । କିଷ୍ଣୁପାଦ ଦରଶନେ ତୃଷ୍ଣା ବାଢ଼ିଲ ମନେ, ଘନେ ଗମନ ଗୁଞ୍ଜିଲ ହେଲେ ଛଳେ ରେ । ବାଁଶୀ ବାଜିଲରେ । ପୂଲିନେ କଦମ୍ବ ତରୁ ତଳ ରେ । ୪ । ଏହି ବେଳେ ବଂଶୀ ଧ୍ୱନି, ଶ୍ରବ୍ଧ ହୟିଁ ଦଲ ହାନି, ନବାଙ୍ଗନା ଗନ ଲଜ କାଜ । ବୋଲେ ଶ୍ରୀଚନ୍ଦନ ବଳେ, ଠାନ୍ୟାନିଲ ପାଦତଳେ; ରୁପ ହେଉ ଗୋପିନୀ ଅନ୍ତର୍ଯ୍ୟରେ । ବାଁଶୀ ବାଜିଲ ରେ । ପୂଲିନେ କଦମ୍ବ ତରୁ ତଳରେ । ୫ ।

ଚୁମ୍ବା ।

ଅନନ୍ଦରେ ମିଳି କନ୍ୟାଗନ । କାନ୍ତ ପାଦପଦ୍ମ କୈଲ ଦରଶନ । ୧ ।
ମୋହନ ମଟୁର ରୁପ ହେଉ । ଦଲ ଘର ବର ଦୁର କରୁ । ୨ ।
ଯେ ମଞ୍ଜି ଲବଣ୍ୟାମୃତ ସ୍ଥାନ । ତାକେ ନେତ୍ର ମୁଖେ କୈଲ ପାନ । ୩ ।

ଚଉପଦୀ ।

ଗୃହୁଁ ଶ୍ୟାମ ମୋହନ ମୂରତି ସେ । ରସବତୀ । ଘୋଷା ।
ଲାଜକୁ ପକାଇ ପଛକୁ ସକଳେ; ଚଞ୍ଚଳାକ୍ଷିଏ ସେ କ୍ଷଣି ଚଞ୍ଚଳେ ।
ନେତ୍ର ନୀଳୋତ୍ପଳ ମାଳା ଏକାବେଳେ; ମଣ୍ଡିଲେ ତେଜି ଧରତୀ ସେ । ରସବତୀ ।
ଦୁଷ୍ଟ ଦୁଷ୍ଟ ନସ୍ତ ମୂର୍ଚ୍ଛକ ହସାରେ । ମୂର୍ଚ୍ଛିଲେ କୁଳ ଶୀଳ ସ୍ୱଇଚ୍ଛାରେ ।
ଘନରସ ବାଞ୍ଛା ଗୃଢକା ପବରେ । ହୋଇଲେ ତୃଷା ଆରତ ସେ । ରସବତୀ । ୨ ।
ସେ ବନ୍ଧ ଗୃହାଣି ନନ୍ଦ କ ହୋଇଲ । ନନ୍ଦପର ଦମ୍ଭ ଚନ୍ଦ୍ରକୁ ହାରିଲ ।
ଯେ ଥିଲା ଶବେକ ସକଳ ଗ୍ରସିଲ । ପୀରତ ବଳେ କୀରତ ସେ । ରସବତୀ । ୩ ।
ବଶୀ କରଣ ଗୁଣ ନେତ୍ର କୋଣରେ । ବସିଛୁ ସୁମୂନ ମାଧୁର୍ଯ୍ୟ ଗୁଣରେ ।
ବସିଛୁ ଉଚ୍ଚାଟ ରସିକ ପଣରେ । ମୋହନ ପନ୍ଥ ବରତି ସେ । ୪ ।

ମହା ମହୋତ୍ସବେ ଶ୍ରୀଚନ୍ଦନ ଭେଟେ । ମହାରଜଜାଙ୍କି ମୋହନ ପାଛୁଣେ ।
ସୂରଙ୍ଗ ଅଧରେ ମନ୍ଦମନ୍ଦ ହାସେ । ଭ୍ରଣି ଲ୍ଲେ ଶ୍ୟାମ ଭାରତୀ ସେ । ରସବନ୍ତୀ ।

ପୟାର ।

କୃଷ୍ଣ ବୋଲେ ଶୁନ ସବ ନୂତନ ବାଲିକା । ନା ଯାଏ ଭ୍ରମର ପାଶେ ସେ ନବମାଲିକା । ୧ । ଜାନିଲ ତବେ ଭ୍ରମର କତ ଭାଗ୍ୟମାନ । ଅପନା ହଇଲ ନବମାଲିକା ମିଳନ ଗୋ । ୨ । ଚଞ୍ଚଳ ନୟନେ ଗୃଲେ ସଖି କତରଙ୍ଗ । ଚାଉ ଶ୍ରେର ପର ହାୟ ତରଙ୍ଗ ତରଙ୍ଗ । ୩ ।

ପୟାର ।

କନ୍ୟାଗନ ବୋଲେ ଓହେ ବସନ ଶ୍ରେର୍ ଶୁନ । କତଦନ ହୈତେ ଗେଲା ମାଖନଶ୍ରେର୍ ଗୁନ । ଅମାର ସନ ଧନ ଲୟା ବନେ ଲୁକ୍ୟାଛୁଲ । ଶୁନ ଗୁନନିଧି ତୁମାର ଶ୍ରେଗ୍ରଧର ଗେଲ ହେ । ଗୁହାର କରଛେ ଅମି ମଦନରାଜା କାଛେ । କି ଜାନି କି ଦଣ୍ଡ ଦବେ ତୁମି ଜାନ ପିଛେ ହେ ॥ ଡାକେ ଘନ ଘନ ମତ୍ତ ପିକ ଦୂତପର । ପାଲାୟ ପାଲାୟ ବନ୍ଧୁ ବୃଥାହୈବେ ଧର ହେ । ୪ । ଡର ଯବେ ମହବୁକେ ଅମି ସ୍ଥାନ ଦବ । ନିର୍ଭୟେ ଉରଜ ଚଢ଼ ମାଝେ ଲୟା ଯାବ ହେ । କୁନ ବଧୂ କହେ କେନ କରହଛଲନା । ବାହୁ ଫାସି ଲୟା ବାନ୍ଧ ସକଲି ଲଲନା ଗୋ । କନ୍ୟାଗନେ ବାନି ଶୁନି ଛଇଲ ନାଗର । ମନ୍ଦ ମନ୍ଦ ହାସେ ପ୍ରଭୁ ଭାଷେ ମୃଦୁଗିର ହେ । ୬ । ହାଜାର ଜନାକେ କେବା ଘୁଢ଼ାଛେ ଓପ୍ରୋଧ । ପ୍ରହାର ନେହାନ୍ତକୁନ୍ତ କେନ ସଖିକୋଧ ହେ । ଶୁନି ପ୍ରଭୁ ବାନି ସବ ଗୋପିନୀତରଲ । ଲଜ ଭୟ ଦୁହା ନିଲ ଅନନ୍ଦେ ବଭୋଲ । ଫୁଲଫୁଲି ଦଧି ସବେ ଉତ୍ସାହେ ବେଢ଼ଲ । ଗୁଲଲ ଧୂଲ ତ ପ୍ରଭୁ ଚରନେ ଚଢ଼ାଲ ଗୋ । ସୁରଙ୍ଗ ହଇଲ ରଙ୍ଗ ଟଜବ ଚରନ । ସିନ୍ଦୁରେ କଇଲ ସ୍ନାନ କି ବାଲ ଅରୁନ ଗୋ । ଗାନ୍ଧିଅ ଅଶୋକବନ ଅଶୋକ ମାଲିକା । ଲମ୍ବାଇଲ କିଷ୍ଣ କଣ୍ଠେ ସେ ନବମାଲିକା ଗୋ । ମାଲ ପାୟା ଅହ୍ଲାଦ ହୟା ଗଲେ ପର କାଲ ॥ ଶୋଭା ବଲିହାର ଗୋପି ଫୁଲଫୁଲି ଦଲା ଗୋ ॥ ବୋଲେ ଶ୍ରୀଚନ୍ଦନ ଶ୍ୟାମଘନ ଖେଲେ ହୋର । ବଲେ ଲୟା କନ୍ୟାଗନ ଜରଛୁଲ ଝୋର ଗୋ ।

ଦୁହା ।

ନୀଲଜ ଗୁଲଲ ଖେଲ କୈଲ । ନବଘନ ଲତା ନାଲ ହୈଲ । ୧ ।
ଚଡ଼ୁଅ ଚନ୍ଦନ ଅରଗଜା । ମାରେ ପିଚକାର ନୃତ୍ୟ ବଜା । ୨ ।
ଅନନ୍ଦେ ଗୁଲଲ ଉଡ଼ାଓଲ । ଶ୍ୟାମ ଗୋର ହୋର ବଢ଼ାଓଲ । ୩ ।

ଏକତାଳ ।

ଅଟରାତେ ଅବ୍ଦରତେ ଅବୀରଂଭଡ଼ିଲା ରେ । ଘୋଷା ।

ଲଳିତ ବସନ୍ତ ରାସ, ରସେ ରସି ପୀତବାସ, ଗୋପଗଣ ସଙ୍ଗେ ହୋଇ ଖେଳନ୍ତ ବଢ଼ିଲା ରେ । ଜାହା ଗଲେ ଗଲେ ମିଳି, ତାହା ଭଳି କୂଳେ ବୋଳି; କେଉଁ ବାଳା ବନମାଳୀ ଶ୍ରୀଅଙ୍ଗେ ଜଡ଼ିଲା ରେ । କେଉଁବାଳା ଅନୁରାଗେ, ଆଳାପି ବସନ୍ତ ରାଗେ, କେ ପୁଷ୍ପକ ବଲ୍ଲକ ଝଲ୍ଲକ ଫାଢ଼ିଲା ରେ । କେଉଁବାଳୀ ମାରେ ତାଳି, ନାଚେ ଶ୍ୟାମ ତଳି ଡଳି, ଫୁଲଫୁଲ-ରାସସ୍ଥଳୀ ଉଚ୍ଛୁଳି ପଡ଼ିଲା ରେ । କେ ଗଣ୍ଡେ ଚୁମ୍ବନ ଦେଇ, ଶ୍ରୀମୁଖୁଁ ତାମ୍ବୁଳ ଖାଇ, କେ ପିଅଇ ପିଅଇ ସୁରବେକ ଏଡ଼ିଲା ରେ ॥ ଫିଙ୍ଗନ୍ତେ କାହା ନୟନେ, ସେକ୍ଷଣି ସେହୁ ଅୟନେ, ବୋଲେ ଶ୍ରୀଚନ୍ଦନ ବେନାକର କେ ଅଡ଼ିଲା ରେ ।

ପୟାର ।

ଏହିମତ ଖେଳ କରେ ବ୍ରଜେନ୍ଦ୍ରନନ୍ଦନ । ବନ ତରୁଲତା ମହୀ ସୁରଙ୍ଗ ବରନ ହେ । ସବ ଗୋପୀ କରମୁଠା ଏକାବେଳେ ଫିଟେ । ଗୁଲାଲ ଧୂଳିତେ ଛନ ଚନ୍ଦ୍ରଦଗେ ଉଠେ ହେ । ନଅଳ ମାଧବୀ ମଲ୍ଲି ଝରାଝ ତରେ । ସବେ ଅନୁରାଗି ହୋଇଛେ ଯେମନ୍ତ ମନ୍ଦାର ହେ । ୩ ।

ପୟାର ।

ଏହିକାଳେ ଶ୍ରୀରାଧାର ସଖୀ ଶ୍ରୀଲଳିତେ । ବୃନ୍ଦାବନେ ପ୍ରବେଶିଲ କୁସୁମ ତୁଳିତେ ହେ । ଲୁକା ଲୁକ ନବଢ଼ ଲତବା ମାଝେ ଥାଇ । ଗୋପୀ ଗୋପୀନାଥ ପ୍ରେମ ରାସୋତ୍ସବ ଦେଖି ହେ । କ୍ରୋଧଭରେ ଭ୍ରୂଭଙ୍ଗିମା କରଅଁ କୁଟିଲ । ବୋଲେ ଶ୍ରୀଚନ୍ଦନ ଧନୀ ପାଶେ ଚଳିଁ ଗେଲ ହେ ॥

ଉହ୍ନା ।

ବାଟୁରେ ଅନ୍ତରେ ସହଚରୀ । ଧନ ଗ୍ଲାଭି ଅଂତମତ୍ର ହରି । ୧ ।
ଧନୀ ଆଜା ବଟନ ରାସୋତ୍ସବ । ଅଟବ ସେଇ ହବେ ଅନୁଭବ । ୨ ।
ଭାବତେ ଭାବତେ ପଥ ଚଲେ । ଶୀଟଦ୍ର ଶ୍ରୀରାଧିକା ପାଶେ ମିଳେ । ୩ ।

ଶ୍ଳୋକଃ ।

ବସନ୍ତେ ବାସନ୍ତ କୁସୁମସୁକୁମାରୈରବୟବୈ ।
ଭ୍ରମନ୍ତୀ କାନ୍ତାରେ ବହୁବହ୍ୱିତକୃଷ୍ଣାନୁସରଣଂ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଲତୟା ।
ବଲବାଧାଂ ରାଧାଂ ସରସମିଦମୂଚେ ସହଚରୀ ।

ଝୋଲ ।

ଏକଦିନେ ରାଈ, ସଖୀଗଣର ସଙ୍ଗେ, ବସନ୍ତ ଭ୍ରମଣ କରେ ଗୋ ।
ପୂର୍ଣ୍ଣଚନ୍ଦ୍ରାନନେ, କୁସୁମ କାନନେ, ମାଧବୀ ଫୁଲ୍ଲ କେ ହେରେ ଗୋ ।
ତାରା ସଞ୍ଚରନ୍ତ ମଧ୍ୟେ । ଫିରେ ସୁକୁମାର ଶ୍ରୀଚରଣେ ଗୋ । ୧ ।
ମାଧବୀ ଫୁଲକେ, ହେରଇତେ ଧନୀ, ମାଧବ ପଡ଼ିଲ ମନେ ଗୋ ।
କିଶୋରର ଚରନ, ଦରଶନ ଭରେ, ଅନୁସରେ ଫଳବନେ ଗୋ ।
ନବ କିଶୋର ରାଧିକେ, ବୃଷଭାନୁ ସୁତା ଗାନ୍ଧର୍ବିକେ ଗୋ । ୨ ।
ଚନ୍ଦ୍ରାର୍ଦ୍ଧ କଳସ, ଧ୍ୱଜ ବଜ୍ରାଙ୍କୁଶ, ଚିହ୍ନମାନ ଦେଖେ ନେନେ ଗୋ ।
ସୁରଙ୍ଗ କମଳ, ବିମଳ ଛବିତେ, ଭାବିତେ ପୁଲକ ଗାତେ ଗୋ ।
ଉତ୍ତମୁଟେଷ୍ଟ ନୀଳବାସ, ତାରେ ନା ହେବ ତେଜଇ ଶ୍ୱାସ ଗୋ ।
ଏହିକାଳେ ମନ୍ଦ, କନ୍ଦର୍ପର ଚନ୍ଦ୍ରା ଶ୍ରୀଅଙ୍ଗେ ହଇଲା ଜାତ ଗୋ ।
ତବେ ଚନ୍ଦ୍ରା କୂଳେ, ସିନ୍ଧାର ଅକୂଳେ, ବାଧାଭରେ ରାଧା ଯୁକ୍ତ ଗୋ ।
କର ନୀଳୋତ୍ପଳ ଫୁଲେ, ମୃଦୁ ଚୁମ୍ବନ ରଙ୍ଗେ ଶିଥିଲେ ଗୋ । ୪ ।
ହେନ କେଳି ସଖି, ଲଳିତା ଅସିଅଁ, ମିଳିଲ ରାଧାଙ୍କ ପାଶେ ଗୋ ।
ବୋଲେ ଶ୍ରୀଚନ୍ଦନ, ହରିଦେବ ନନ୍ଦନ, କଷ୍ଟଗୁଣ ପରକାଶେ ଗୋ ।
ବୋଲେ ଶୁଣ କୁତୁହଳି, ଗୋପୀନାଥେର ସୁରସ କେଳି ଗୋ ।

ଦୀର୍ଘଛନ୍ଦ ।

ଲଳିତ ଲବଙ୍ଗ ଲତା, ମୃଦୁ ପରଶିଲ ଲତା, କୋମଳ ମଳୟ ମନ୍ଦାନିଳେ । ମତ୍ତଭୃଙ୍ଗ ମଧୁପାନେ, ନିକୁଞ୍ଜ କୁଟିର ବନେ, କୁଜନ୍ତ ପ୍ରମତ୍ତ ପିକକୁଳେ ଗୋ । ହରି ବିହରେ, ସରସ ବସନ୍ତ କାଳେ ବନେ, ନୃତ୍ୟନ୍ତ ଯୁବତୀ ଜନେ, ଦୁରନ୍ତ ନାଗର ସନେ, ବିରହୀ ମଗନେ ସାବଧାନେ ଗୋ । ୧ । କାମମନୋରଥେ ମତ୍ତ, ପଥିକ ଯୁବତୀ ଯତ, ଜନିତ ଅକୂଳେ ଅତିକ୍ଲାନ୍ତ । ଅଳିକୁଳ ମୋଦଭର, କୁସୁମ ସମୂହେ ପୂର, ସକଳି ବକୁଳ ପୁଷ୍ପବନ୍ତ ଗୋ । ହରି ବିହରେ, ସରସ ବସନ୍ତ କାଳେ ବନେ । ୨ । ନବୀନ ତମାଳ ମାଳ, ମୃଗମଦ ପରିମଳ; ବିପିନ ଯୁବତୀ ଉରସ୍ଥଳ । ନାଗର ମଦନ ନଖ, କ୍ଷତ ଅର୍ଦ୍ଧଚନ୍ଦ୍ର ରେଖ, ରଙ୍ଗରାଜେ ପଲାଶ ପ୍ରଫୁଲ୍ଲ ଗୋ । ହରି ବିହରେ, ସରସ ବସନ୍ତ କାଳେ ବନେ । ୩ । ମନ-ମଥ ମହୀପତି, କନକ ଦଣ୍ଡ ଅକୃତ, ନାଗେଶ୍ୱର କୁସୁମ ବିକାଶେ । ପାଟଳି ପଟଳେ ଅଳି, ବସିଛେ ଏମନି ଝଲି; ସ୍ମର-ଶର ଭରତ ଆଭାସେ ଗୋ । ହରି ବିହରେ, ସରସ ବସନ୍ତ କାଳେ ବନେ । ୪ । ତରୁଣା କରୁଣା ପୁଷ୍ପ, ଲଜ୍ଜା ତ୍ୟଜି କରେ ହାସ୍ୟ, ଜଗଜନେ ତାଏ ଦେଖି ଯାଏ । କେତକୀ ଦନ୍ତୁର ସ୍ମିତ,

ମାର କୁନ୍ତ ମୁଖାକୃତି,ବିରହୀ ବଧିବେ ତୋଷ ପାଏ ଗୋ । ହରି ବିହରେ ସରସ ବସନ୍ତ କାଲେ ବନେ । ୫ । ମାଧବୀ ମଲ୍ଲିକା ଜାତି, ପରିମଳେ ଯତି ମତି, ମୋହନେ ମୋହନ ବୃନ୍ଦାବନେ । ତାହେ ଉଛୁଳ ବମନୀ, ସ୍ନେହେ ନିଜ ବନ୍ଧୁମାନ ମାନବ୍ୟେର ମସ୍ତକ ସାଜେନ ଗୋ । ହରି ବିହରେ, ସରସ ବସନ୍ତ କାଲେ ବନେ । ୬ । ପଲ୍ଲବିତ ଲତା କାନ୍ତା, ପାଦପକାନ୍ତେ ଜଡ଼ନ୍ତା, ମୁକୁଳିତେ ପୁଲକିତ ଚ୍ୟୁତ ବୃନ୍ଦାବନ ସରସରେ, ଯମୁନା ବହଇ ଧୀରେ, ତାକେ ସ୍ପରଶିଅଁ ଅସେ ବାତ ଗୋ । ହରି ବିହରେ ସରସ ବସନ୍ତ କାଲେ ବନେ । ୭ । ସରସ ବସନ୍ତ ଗୀତ, ବର୍ଣ୍ଣିତେ କମ୍ପଇ ଚିତ୍ତ, ଯାତ ଯୁଥି ବନ୍ଧ୍ୟେ ମଧୁପ । ଦୁଃଖେ ଶ୍ରୀ ଚନ୍ଦନ ବୋଲେ ତବ କାନ୍ତ ଏହିକାଲେ, ନବ ବଧୂ ରମିତେ ଅଲପ ଗୋ । ହରି ବିହରେ ସରସ ବସନ୍ତ କାଲେ ବନେ । ୮ ।

ଶ୍ଳୋକଃ ।

ଦରବିଦଳିତ ମଲ୍ଲୀ ବଲ୍ଲୀ ଚଞ୍ଚତ୍ପରାଗ
ପ୍ରକଟିତ ପଟୁ ବାସୈର୍ବାସୟନ୍ କାନନାନି,
ଇହହି ଦହତି ଚେତଃ କେତକୀ ଗନ୍ଧବନ୍ଧୁ
ପ୍ରସରଦ ସମବାଣପ୍ରାଣବଦ୍ଗନ୍ଧ ବାହଃ ।

ପଦ୍ୟାର ।

କେଲିକଦମ୍ବେର ତଲେ ନନ୍ଦେର ନନ୍ଦନ, ତ୍ରିଭଙ୍ଗି ଭଙ୍ଗିମା ହୟେଁ ମୂରଲୀ ବଦନ ହେ । ୧ । ବସନ୍ତେର ମହୋତ୍ସବ ହେରି ରସ ରାଜ, ମତ୍ତ ହୟେଁ ନୃତ୍ୟକରେ ଗୋପିନୀ ସମାଜ ଗୋ । ୨ । ଯମୁନା ପୁଲିନେ ଦର ବିଦଳିତ ମଲ୍ଲି, ପଡ଼ିଅଛି କୁସୁମ ଧୂଲି ଶୋଭେ ଦଶେ ବଲ୍ଲି ଗୋ । ୩ । କାନନେ ଭରତ ହୟେଁ ପ୍ରକଟେ ସୁବାସ, ଦହନ କରେ ନବବିରହିଣୀର ମାନସ ଗୋ । ୪ । କେତକୀର ବନ୍ଧୁ ହୟେଁ ମନ୍ଦବାତ ବହେ, ପ୍ରପଞ୍ଚ କୁସୁମ ବାନ ପଞ୍ଚପ୍ରାନ ଦହେ ଗୋ ।୫।

ଡ଼ୂହା ।

ଶୁନ ଶୁନ ଅଗୋ କମଲିନୀ, ଗୋପୀ ମାଝେ ନାଚେ ନୀଲମଣି । ୧ ।

ଶ୍ଳୋକଃ ।

ଉନ୍ମୀଲନମଧୁଗନ୍ଧଲୁବ୍ଧ ମଧୁପ ବ୍ୟାଧୂତ ଚ୍ୟୂତା-ଙ୍କୁର,
କ୍ରୀଡ଼େତ୍କୋକିଳ କାକଳୀ କଳକଳୈ ରୁଦ୍ଗୀର୍ଣ୍ଣ କର୍ଣ୍ଣଜ୍ୱରାଃ,
ନୀୟନ୍ତେ ପଥିକୈ କଥଂ କଥମପି ଧ୍ୟାନାବଧାନକ୍ଷଣ,
ପ୍ରାପ୍ତପ୍ରାଣସମାସମାଗମରସୋ ଲ୍ଲାସୈ ରମୀ ବାସରାଃ । ୨୫ ।

ଉନ୍ମିଳିତ ମଧୁଗନ୍ଧେ ଲୁବ୍ଧ ମଧୁକର; କମ୍ପନ କରେ ବଲ୍ଲେକନେ ନବ ଚ୍ୟୁତାଙ୍କୁର ଗୋ । ୧ । ତାହେ ସୁକୋମଲ କଲରବେ କ୍ରୀଡ଼ା କରେ; ଶୁନ୍ତେ କମ୍ପଇ କର୍ଣ୍ଣ କମ୍ପଜ୍ୱର ଭରେ । ୨ । ପ୍ରବାସି ବନିତାକୁଲ ହେଉଅଁ ଅକୁଲ; କି କରୁପେ ପ୍ରାନ ମାତ୍ର ଧରଛେ କେବଲ ଗୋ । ୩ । ପ୍ରାନେର ପ୍ରୟାନକାଲ ପ୍ରାପ୍ତି ହୈଛେ ତାରେ; ଏହକାଲେ ତବ କାନ୍ତ ଉଲ୍ଲାସେ ବିହରେ ଗୋ । ୪ ।

ଧୁହା ।

ଶୁନ ଶୁନ ସଖି କିଶୋରୀ; କ୍ରିଷ୍ଣନାଚେ ଗୋପୀ ଅଛେ ଘେର । ୧ ।

ଶ୍ଳୋକଃ ।

ଅଦ୍ୟୋତ୍ତୁଙ୍ଗ ବସା ଭୁଜଙ୍ଗ କବଳ କ୍ଳେଶାଦ ବେଶା ବଳଂ,
ପ୍ରାଲେୟ ପ୍ଳବନେଚ୍ଛୟାନୁସରତି ଶ୍ରୀଖଣ୍ଡଶୈଳାନିଳଂ;
କିଞ୍ଚସ୍ନିଗ୍ଧରସାଳ ମୌଳିମୁକୁଳାନ୍ୟାଲୋକ୍ୟ ହର୍ଷୋଦୟ
ଦୁନ୍ମୀଳନ୍ତି କୁହୂଃ କୁହୂରିତି କଲୋତ୍ତାଳାଃ ପିକନାଂଗିରଃ । ୨ ।

ପୟାର ।

ଆର ଏକକଥା ଶୁନ ପ୍ରାନେର ସଜନି; ମଲୟ ପର୍ବତୁଁ ମନ୍ଦବାତ ଆଇଲ ଧ୍ୱନି ଗୋ । ୧ । ଭୁଜଙ୍ଗ ଖାବାର ଡରେ ଲୁକାଯୁଁ ଲୁକାଯୁଁ; ଗୋବର୍ଦ୍ଧନ ଉଠ-ମାଙ୍ଗେ ପଡ଼ଲ ଝୁଣ୍ଟିଅ ଗୋ । ୨ । ଝାମଜାୟା କ୍ଳେଶଭରେ ଯମୁନାକେ ଗେଲ, ତାରେ ମଜ୍ଜି ମନ୍ଦବାତ ଚେତନା ପାଇଲ୍ଲ ଗୋ । ୩ । ଲଳିତ ଲବଙ୍ଗଲତା ବେଣ ସ୍ପର୍ଶ କୈଲ; କମ୍ପିତ ଚ୍ୟୁତ ମୁକୁଳ ହରଷ ଲଭିଲ ଗୋ । ୪ । ତାହେ ମିଲି ପିକ କୁହୁ କୁହୁ ରବଭରେ; କାମ କୁହୁ ଘୋଷିଅଛେ ବିପନ ମାଝାରେ ଗୋ । ୫ । ସେହ ସର୍ପଖିଆ ବାତ ଅଛେ କ୍ରିଷ୍ଣସଙ୍ଗେ; ତାକେଲଯୁଁ । ନାଚୀମାଙ୍ଗେ ନାଚେ ନବ ରଙ୍ଗେ ଗୋ । ୬ । ଚୂଡ଼ାନିଠାଲନି ତାଲେ ମୃଦୁଲ ପବନେ; ନାଚେ ନଟବର ସଏ ଗୋପନାରୀ ସନେ ଗୋ । ୭ ।

ପୟାର ।

ଶୁନିଯୁଁ । ଶ୍ରୀମତୀ ପ୍ରେମ ଶିଥିଲ ହଇଲ; ମନେମନେ କୋଧ ମୁଖେ ଆନନ୍ଦ ବାଢ଼ିଲ ଗୋ । ୧ । ବୋଲେ ଆମି ଦେଖି ଯାବ ବନ୍ଧୁର ସାଜନି; ଗୈରାଇ ଗୋପିନୀ ନିଛେ ଆମାର ନୀଲମନି ଗୋ । ୨ । ଲତାର ଉହାଡ଼େ ଥାକି ଲୁକ୍କିଅଁ ହେରିବ; କେମନି କରଇ କ୍ରୀଡ଼ା ପ୍ରାନେର ବାନ୍ଧବ ଗୋ । ୩ । ବୋଲେ ଶ୍ରୀ ଚନ୍ଦନ ଅନୁରାଗି ବିନୋଦିନୀ; ସଖି ସାଥେ ଗେଲ ଯାହାଁ ନାଚେ ନୀଲମନି ଗୋ ।

ଶ୍ଳୋକଃ

ଅନେକନାଗ୍ରୀପରିରମ୍ଭସମ୍ଭ୍ରମସ୍ଫୁରନ୍ମନୋହାରିବିଲାସଲାଲସଂ ।
ମୁରାରିମାରାଦୁପଦର୍ଶୟନ୍ତ୍ୟସୌ; ସଖୀ ସମକ୍ଷଂ ପୁନରାହ ରାଧିକା ।

ଯଥାରାଗ ।

ଦେଖ ସଖି ସନେ, ଲତା ଛଳେ ଲୁକ, ଦେଖେ ରାଈ ଶ୍ୟାମ ବିଳାସ ।
ଅନେକ ନାଗରୀ; ପରିରମ୍ଭ କରି; ଗୋବିନ୍ଦର ମନ ଉଲ୍ଲାସ ।
ମାର ମାଦକେ ସଂଭ୍ରମ; ହୃଦେସ୍ଫୁରେ ମନୋହାରି ପ୍ରେମ ଗୋ । ୧ ।
ପୂର୍ବେ ମୁରଦୈତ୍ୟ; ଯେଉ ନାଶିଥିଲ; ସେଇ ନାକି ଏଇ କଲିଛେ ।
ଅବେ କି ସୁନ୍ଦର; ହୋଇଛେ ସାଜେନ; ଦେଖ ଟଗ ଗୋପିନୀ ସହିତେ ।
ବୋଲେ କିଶୋରୀ ରାଧିକା ! ଦେଖ କି ଶୋଭା ଏ ଗିରି ଟେକା ଗୋ ।୨।
ଚନ୍ଦନ ଚର୍ଚ୍ଚିତ; ନୀଲ କଳେବର; ପୀତ ବସନମାଲ୍ୟା ।
ଖେଳନ୍ତ ଚଞ୍ଚଳ; ରତନ କୁଣ୍ଡଳ; ଗଣ୍ଡଯୁଗ ସ୍ମିତ ସାଲିଯା ।
ମଧ୍ୟାନାହିଁ ଏକ ନାରୀ ସବ ମୁଗ୍ଧାସନେ ଖେଳେ ହରି ଗୋ ।୩।
ପୀନ ପୟୋଧର; ଗୋପିନୀ ନିକର ଲିହିଛେ ଶ୍ୟାମେର ହୃଦେ ଗୋ ।
ମର୍କତ କପାଟେ; କୁନ୍ଦନ ସଂପୁଟେ; ବସାଇଲ ଉନମାଦେ ଗୋ ।
କୁନ ଗୋପୀ ଅନୁରାଗେ କରେ ଆଳପ ପଞ୍ଚମ ରାଗେ ଗୋ ।୪।
ଦେଖ ଦେଖ ସଖି; କୁନ ଚନ୍ଦ୍ରମୁଖୀ; ବିଳସେ ଉଲ୍ଲାସେ ଅତି ଗୋ ।
ନୟନ ଉଲ୍ଲୋଳେ; ମଦନେ ଚହିଲ ସହଜେ ମୁଗୁଧା ଜାତି ଗୋ ।
ଶ୍ୟାମ ବଦନ କମଲ । ଧ୍ୟାନଧରି ମୁନିମତ୍ତ ଭେଲ ଗୋ ।୫।
କୁନ ନାରୀ ବନ୍ଧୁ କପୋଳ ତଳତେ; କୁନ ନାରୀ ଶ୍ରୁତି ମୂଲେ ଗୋ ।
ମଣ୍ଡି ଗୁରୁ ଚୁମ୍ବ; ଖଣ୍ଡି ଅଛେ ଦମ୍ଭ; ପୁଲକେର ଅନୁକୂଳେ ଗୋ ।
ସାକ୍ଷୀ ହୟ ବିଶାଖିକେ । ମିଥ୍ୟା ପଣ୍ଡିତେର ଅଦ୍ଭୁତେକ ଗୋ ।୬।
କୁନ ରସିକନୀ; ହଇୟା ଉନ୍ମତ୍ତ ଯମୁନା ନଦୀର ତୀରେ ଗୋ ।
ଲତାକୁଞ୍ଜ ଗତେ; ବନ୍ଧୁକେ ଲଇତେ; ବାସ ଆକର୍ଷଣ କରେ ଗୋ ।
ମଞ୍ଜୁ ବଞ୍ଜୁଲ ବଲ୍ଲରୀ । କୁଞ୍ଜେ ଏକାନ୍ତେ ମଗନ ଭରି ଗୋ ।୭।
କୁନ କୁନ ନାରୀ; ଦେଇ କରତାଳି; ଝୁମୁ ଝୁମୁ ଅଭରନ ଗୋ ।
ନାଚେ ଚଳ ଚଳି; ବାଜାୟା ମୁରଲୀ; ଶ୍ୟମଲିଆ ନବଘନ ଗୋ ।
କୁନ ନାରୀ ପ୍ରଶଂସାରେ; ଦେଏ ଅଲିଙ୍ଗନପୁରସ୍କାରେ ଗୋ ।୮।
କୁନ ଗୋପୀ ସ୍ତନ; ଜଘନ ବସନ ଆକର୍ଷଣ କିସ୍ତ କରେ ଗୋ ।
ହେନ ଶୋଭା ହେରି; ମଦନ ମୋହନ; ସର୍ବାଙ୍ଗେ ପୁଲକ ପୁରେ ଗୋ ।

କୁନ ଗୋପୀ ମାରେ ଢାଲ । ବଳେ ଗଲେ ଗଲେ ଯାଏ ମିଳି ଗୋ । ୯ ।
କୁନ ନିତମ୍ବିନୀ, ପୁଲକ ବହୁଅଁ ; କ୍ରିଷ୍ଣ ମୁଖେ ଚୁମ୍ବ ଦଏ ଗୋ ।
ମଦନ ଦର୍ପନ; ବଦନୁ କେବଳ; ଗୋପିନୀ ତାମ୍ବୁଲ ଖାଏ ଗୋ ।
କେଲି କଦମ୍ବର ତଳେ; କେଳି କରଇ ଯମୁନା କୁଳେ ଗୋ । ୧୦ ।
କୁନ ରସିକିନୀ; ତାମ୍ବୁଲ ଚର୍ବନ; କରଅଁ ଦ'ଭାଗ କରେ ଗୋ ।
ଅଧକ ଖାଇଅଁ, ଆଧକ ଲଇଅଁ ; ଦଏ ଶ୍ୟାମ ଶ୍ରୀମୁଖରେ ଗୋ ।
ହେନ ବେଳ ବିମ୍ବାଧରେ, ଦନ୍ତ ଦଂଶନେ ସିତ୍କାର ଧରେ ଗୋ । ୧୨ ।
ବୋଲେ ଶ୍ରୀନନ୍ଦନ, ନିଧୁବନ ଶୈର, ମାଧୁରୀ ଏମନି ସାଜେ ଗୋ ।
ଚଞ୍ଚଳ ନେତ୍ରାନ୍ତେ; ଚଲେନ ଗୋପିନୀ, ବଙ୍କିମ ଭୁରଜା ମାଝେ ଗୋ ।
ଗୁରୁ କୁଟିଳ ଅଲକ, ମୋତ କଲପେ ଅତ ଝଟକ ଗୋ । ୧୩ ।

ଶ୍ଳୋକଃ

ବିଶ୍ୱେଷାମନୁରଞ୍ଜନେନଜନୟନ୍ନାନନ୍ଦମିନ୍ଦୀବର ।
ଶ୍ରେଣୀ ଶ୍ୟାମଲକୋମଳୈ ରୁପନୟନଙ୍ଗୈରନଙ୍ଗୋତ୍ସବ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗ ମାଲିଙ୍ଗିତଃ ।
ଶୃଙ୍ଗାରଃ ସଖି ମୂର୍ତ୍ତି ମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି ।

ପୟାର ।

ଅଖିଲ ସଂସାର ଜନ ଜନିତ ଆନନ୍ଦ; ଇନ୍ଦୀବରଦଲଶ୍ରେଣୀ ଶ୍ରୀରୂପ ଗୋବିନ୍ଦ ଗୋ । ନିଜ ଅଙ୍ଗେ ଅନଙ୍ଗେର ଉତ୍ସବ କରାଇ, ସ୍ୱଚ୍ଛନ୍ଦେ ବ୍ରଜସୁନ୍ଦରୀ ନିର୍ଭରେ ରମଇ ଗୋ ॥ ସ୍ନେହ ଅବିବାହୀ ଧନ୍ୟା କନ୍ୟାଗନ; ନିର୍ଭରେ ପ୍ରତ୍ୟକ୍ଷେ କରେ କ୍ରିଷ୍ଣ ଅଲିଙ୍ଗନ ଗୋ ॥ ଶୃଙ୍ଗାର ରସକ ସଖି ମୂର୍ତ୍ତିବନ୍ତ ହେଇଛେ, ମୁଗ୍ଧାମନ ହରିହର କ୍ରୀଡ଼ା ଆରମ୍ଭିଛେ ଗୋ । ଏମନି କହୁଅଁ ଧନୀ ବିପିନେ ବିହରେ, ଭିଲ୍ଲ ଲତା ଲୁକେ କହୁଁ କଭୁଁ ହେରେ ହେରେ ॥ ଲଳିତ ବସନ୍ତ ରାସେ ରସିଛେ ମୋହନ, ଶୋଭା ବଲିହାରି ରାଧେ ମୃଦୁ କମ୍ପମାନ ଗୋ ।

ପୟାର ।

ପ୍ରଥମ ଛନ୍ଦେର ବ୍ୟାଖ୍ୟା ହୈଲ ସମାପନ, ଶ୍ରୀଗୁରୁ ଗୋବିନ୍ଦ ପାଦେ କୋଟି ପ୍ରଣମିତ ॥ ଶିକ୍ଷା ଗୁରୁ କ୍ରିପାମୟୀ ଶ୍ରୀମତୀ କିଶୋରୀ, ମଦନମୋହନ ଅଙ୍ଗେ ନିବାସ ଯାହାର ହେ ॥ ପଦ୍ମାବତୀ କାନ୍ତ ଜୟଦେବ କବିରାଜ; ଶୃଙ୍ଗାର ବିବେକ ତତ୍ତ୍ୱ ନିରୂପନେ ଅର୍ଥ ହେ ॥ ତାର କ୍ରିପାବଲେ ତାର ବଦନ ଉଦ୍ଗୀର୍ଣ୍ଣ, ଅଜ୍ଞାନୀ ପିଣ୍ଡିକ କରେ ଉଚ୍ଛିଷ୍ଟ ଚର୍ବନ ହେ ॥ ଉଜ୍ଜ୍ୱଲ ରସ ଗୁହ୍ୟତ ଜନା ଯେଇ ହୟ; ଏଇ ନୀଲ ବନମାଳ ଗଲତେ ପରୟ ହେ ॥ ପିଣ୍ଡିକେର ନାମେ ମୂର୍ଖ ନା ହଏ

ବର୍ଣ୍ଣିତେ, ଶ୍ରୀଚନ୍ଦନ ଶବ୍ଦେ ଦୋଷ ନା ଲୟ ମହାନ୍ତେ ହେ । ଅଜ୍ଞାନ ପ୍ରେମସାଗର ତ୍ରୟୋଦଶ ଛାନ୍ଦ, କାର୍ତ୍ତିନ କର ଓହେ ହରିଷ୍ଟ ଲିଙ୍ଗ ଜ୍ଞାନବୃନ୍ଦ ହେ ।

ଦ୍ୱିତୀୟ ଛାନ୍ଦ ।

ଶ୍ଳୋକଃ

ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ ।
ବିଗଳିତନିଜୋତ୍କର୍ଷଦୀର୍ଷା ବଶେନ ଗତାନ୍ୟତଃ ।
କ୍ୱଚିଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ ।
ମୁଖରଶିଖରେ ଲୀନାଦୀନାପ୍ୟୁବାଚଃ ରହଃ ସଖୀଂ ।

ବୋଲି ।

ଲଲିତା ବିଶାଖା, ବେନି ସଖିସନେ, ବିହରଅଁ ବନେ ଶ୍ରୀରାଧେ ।
ସାଧାରନ ପ୍ରେମେ, ଉତ୍କର୍ଷା, ଈରଷା, ବସେ ମନେ ମନେ ସନ୍ତୋଷେ ।
ମତ୍ତ କରୀନ୍ଦ୍ର ଗାମିନୀ, ମୃଦୁ କମ୍ପନ ନାସା ନଥିନୀ ଗୋ । ୧ ।
କୁଟିଲ ଗାରମା, ଭ୍ରୂଲତା କାର୍ମ୍ମୁକେ, କାଜଳ ଶିଞ୍ଜିନ ପୂରନ ।
ବିଶେଷେ ବିଶାଳ, ନୀଳୋତ୍ପଲ ବାନ; ଡେରନ୍ତି ଲକ୍ଷନ ତୀକ୍ଷନ ।
ମନ୍ଦ ସନ୍ଧାନ ମାଧୁରୀ; କୈଲ ପ୍ରୟୋଗ ଗୋବିନ୍ଦ ହେରି ଗୋ ।
ହେବ ଅଥୟ ମୁରଲୀଧାରୀ ଗୋ । ୧ ।
ଗୋପୀ ଗୋପୀନାଥ; ସମ୍ମତ କଣ୍ଠିତ; ଲେବନ କରନ୍ତେ ଚଳିଲ ।
ଅର୍ଜୁନେର କୁଞ୍ଜେ; ମଧୁବ୍ରତପୁଞ୍ଜେ; ଝଙ୍କୃତ ନିନାଦ ଶୁନିଲ ।
ତାତେ ମିଳଅଁ ଶ୍ରୀମତୀ । ପ୍ରାନ ସଖିରେ ରଙ୍ଗେ ଭାରତୀ ଗୋ । ୩ ।
ମୟୂର ଚନ୍ଦ୍ରିକା; ଚୂଡ଼ା ମନୋହର; ତାର ତଳେ ବେଢ଼ା ମଲ୍ଲୀ ଗୋ ।
ଝିଣ୍ଟୀ ଗୋଟି ଚମ୍ପା; କିଂଶାଖା କେତକୀ, ଏମନି ଝଲକା ଝଲି ଗୋ ।
ଯେନ କାଲ ମେଘ ପାଶେ; ପୁରନ୍ଦର ଧନୁ ଶୋଭା ଦିଶେ ଗୋ । ୪ ।
ମଦନ ମୋହନ; ମୋହନ ଅଧରେ; ମୋହନ ପିୟୂଷ ସାଜେ ଗୋ ।
ତାତେ ପାନକରି; ମୋହନ ମୁରଲୀ; ମଧୁର ମଧୁର ବାଜେ ଗୋ ।
ଝମେ ଝଲକ କପୋଲେ । ତାତେ ଚୁଇଁତେ କଖନ ଚଲେ ଗୋ । ୫ ।
ବିପୁଲ ପୁଲକ; ଶ୍ରୀଭୁଜ ପଲ୍ଲବ; କତ ନାରୀ ଆଲିଙ୍ଗନେ ଗୋ ।
ଘନ ଅପଘନ; ରତ୍ନଆଭରନ; ମିଶେ ଯେନ ଅଙ୍ଗେ ଘନେ ଗୋ ।
ସଖି ଆମି କି ବାଉଲ; ଦଖି ପରିହାସ ନା-କରିଲ ଗୋ । ୬ ।
ବାନ୍ଧୁଯିବ ନବ; ପଲ୍ଲବ ଅଧର ଦରହାସେ ମନୋରମ ଗୋ ।
ଗୋକ ହୈଛେ ବଧୂ; ବଦନ ଚୁମ୍ବନେ; ମଦାଦ କଲିକା ସମ ଗୋ ।

ସଖି ଅମି କି ବାଉଲ; ଦଖି ପରିହାସ ନା କଇଲ ଗୋ । ୭ ।
ମକର କୁଣ୍ଡଳ; ମନୋହର ଗଣ୍ଡ; ସ୍ଥଳେଛେ ଖେଲଇ ଦୋଲି ଗୋ ।
ପୀତବାସ ଠାନି; ମୁନିଗନ ମନ; ମନସିଜେ ଦଏ ଢାଲି ଗୋ ।
ସୁର ଅସୁର କିନ୍ନର; ବାରେ ହେର ହିବେ ପଞ୍ଚକର ଗୋ । ୮ ।
କଦମ୍ବ ତଳରେ; ହେରି ହେନ ବେଳ; ଉଯ୍ ଉପୁକାଯୁଁ । ଛନେ ଗୋ ।
ନୂଆ ଗୈର ପରି, ତରଙ୍ଗ ଗୃହାନି ; ସେଇତ ପଡ଼ିଲ ମନେ ଗୋ ।
ସଖି ଅମି କି ବାଉଲ; ଦଖି ପରିହାସ ନାକଇଲ ଗୋ । ୯ ।
ବୋଲେ ଶ୍ରୀଚନ୍ଦନ, ସକଳି ବଧୂର; ଅଧରୁ ମଧୁର ମଧୂ ଗୋ ।
ମରନ୍ଦ ଖାଇଅ; ମଧୁରିପୁ ନାମ ବହିଛେ ଗୋକୁଳ ବଧୂ ଗୋ ।
ରସ ଉପାସିକ ଜନେ; ତାର ରଚନ ସୁରିହ ମନେ ହେ । ୧୦ ।

ଶ୍ଳୋକଃ ।

ଗଣୟତି ଗୁଣଗ୍ରାମଂ ଭ୍ରମ୍ୟ ଭ୍ରମାଦ୍‌ବପିନେ ହତେ ।
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।
ଯୁବତୀସୁବଳତୃଷ୍ଣେ କୃଷ୍ଣେ ବିହାରଣୀ ମାଂ ବିନା ।
ପୁନରପି ମନୋ ବାମଂ କାମଂ କରୋତି କରୋମି କିଂ ।

ଦୀର୍ଘଛନ୍ଦ ।

ତବେ ନବୀନ କିଶୋରୀ; ସାଥେ ଲୟୁଁ । ସହଚରୀ; ଅଛୁନେର କୁଞ୍ଜବନେ ଭ୍ରମେ । ମନେ ପ୍ରାଣନାଥ ସୁରି; ହୃଦୟେ ଉତ୍କଣ୍ଠା ଭରି: ଅବେଶ ଜାତବେଦ ଗୁନ ଗ୍ରାମେ ଗୋ । ସଖି ଗୋ; ପୁନରପି କାମ କୈଲ ଦୁଃଖୀ ଗୋ; ଅବେ କି କରିବ କହ ଦଖି ଗୋ ॥ ଲଳିତା ସଖିରେ ଭାଷେ, ବନ୍ଧୁକେ ମୁଞ୍ଚିଲ ଦୋଷେ; ବହିଲ ଅପରିତୋଷ ଚିତ୍ତେ । ଯୁବତୀ ସମୂହେ ହିସ୍ତ; ହୋଇଲ ରସରାଜ କିସ୍ତ; ଅମି ହେଲ ବିରହନୀ ମତେ ଗୋ । ସଖି ଗୋ; ପୁନରପି କାମ କୈଲ ଦୁଃଖୀ ଗୋ । ଅବେ କି କରିବ କହ ଦଖି ଗୋ ॥ ସତେ ଅଜ ନିଶିମାଝେ; ଯାବ ନିଭୃତ ନିକୁଞ୍ଜେ; ଏକାନ୍ତେ ବସିଅ ଥିବ ବନ୍ଧୁ । ସକଳି ଦିଗକେ ଗୃହିଁ; ଚକିତ ହଇଯୁଁ । ରହି ଲୁକଅଁ ହେରିବ ବ୍ରଜବନ୍ଧୁରେ । ସଖି ରେ; ହସିଅଁ କରିବ କୋଲ ସେହି ରେ; ବଳେ ଅମାର ଗଳେ ମିଳିଁ ଯାଇବରେ ॥ ପ୍ରଥମେର ସମାଗମ, ଲଜ୍ଜିତେ ହେରଅଁ ଶ୍ୟାମ ରଞ୍ଜିବ ବିନୟ ଅନକୁଳେ । ମଦନେର ମନୋରଥ; ସବ-କାରେ ହବେ ସ୍ୱାର୍ଥ; ରଞ୍ଜିବ ଅମାର ସନେ ସେଇରେ । ସଖିରେ; ଉଦାର କେଶି ମଥନ ହୋଇ ରେ । ମନ୍ଥନକରେ ସ୍ତନେ କର ଲଇଁ ରେ । ୪। ନବୀନ ପଲ୍ଲବ ଶେଯେ; ସୁତଅଁ ମୋହନ ରାଜେ; ଶୁଅବ ଅମାକେ ଉରପରେ । କର

ଗାଢ଼ ପରିରମ୍ଭ ଦବେ ଗଣ୍ଡେ ଗୃହ୍ଣ ଚୁମ୍ବ, ଗୃହ୍ଣିବ ଅଧରୁ ସୁମଧୁର ରେ । ସଖିରେ, ଉଦାର କେଶି ମଥନ ହୋଇ ରେ, ମନ୍ଥନ କରେ ସ୍ତନେ କର ଲଇ ରେ । ୫ । ଅଲସିତରେ ଉନ୍ନତ: ଲୋଚନ ଯୁଗ ଘୂର୍ଣ୍ଣିତ; ପୁଲକେ ଲଳିତ ସୁ-କ-ପୋଲ । ଶ୍ରମଜଳେ ଜଳଧର; କମ୍ପମାନ କଳେବର; ମଦନ ଉନ୍ମାଦେ ଅତି ଲୋଲ ରେ । ସଖିରେ ଉଦାର କେଶି ମଥନ ହୋଇରେ; ମନ୍ଥନ କରେ ସ୍ତନେ କର ଲଇ ରେ । କାମ ବୀଜ ସ୍ତୋତ୍ର ମନ୍ତ୍ର; କୋକିଳ କଳ କୁଜିତ; ଶୁଣିକେଶୁଁ ଗାତ୍ର ଶ୍ଳଥ ହବେ । ହେମବେଲ ଘନସ୍ତନେ; କାନ୍ତ ନଖ ତୀକ୍ଷ ମୂନେ; ମାର ଜୟ ନଖେ ଲିଖି ଦବେ ଗୋ । ସଖି ଗୋ, ଉଦାର କେଶି ମନ୍ଥନ ହୋଇ ଗୋ; ମନ୍ଥନ କରେ ସ୍ତନେ କର ଲଇଁ ଗୋ ॥ ସୁରତେ ପରିପୂରିତ; ମନ ନୂପୁର ଝଣତ; ଚରଣେ ବାଜିବ ତାନମାନ । ବାଜିବ କଟି କିଙ୍କିଣୀ; ନାଚିବ ନାଶା ନଥଣୀ; କୁଚ ଉହେ ଉଠିବ ଚୁମ୍ବନ ରେ । ସଖିରେ, ଉଦାରକେଶୀ ମଥନ ହୋଇ ରେ; ମନ୍ଥନ କରେ ସ୍ତନ କର ଲଇଁରେ । ୮ । ସୁରତ ରସେ ଅଲସ; ନୟାନ ପଙ୍କଜକୋଷ, ରବି-ଦୂ ଉଦୟେ ଫେଡ଼ି ମୁଦ । ଅମି ଶ୍ୱାସ ଚେଳି ଯିବେ; ମଦନ ମୋହନ ତରେ; ମନମଥେ ହଇବେ ଉନ୍ମାଦ ରେ । ସଖିରେ, ଉଦାରକେଶୀ ମଥନ ହୋଇ ରେ; ମନ୍ଥନ କରେ ସ୍ତନେ କର ଲଇଁରେ । ୯ । ରସିକ ବୃନ୍ଦ ସୁନ୍ଦର; ମଧୁବନ ପୁରନ୍ଦର; ମୋହନ ମାନସେ ଭାବି ରାଧା । ଉତ୍କଣ୍ଠା ନାୟିକା ହଏ; ଶ୍ରୀଚନ୍ଦନ ଅବେ ଧାୟେ; କବେ ଯିବେ ଅମର ମନବାଧା ଗୋ । ସଖି ଗୋ । ଉଦାରକେଶୀ ମଥନ ହୋଇ ଗୋ; ବଲେ ଅମର ଗଳେ ମିଲ୍ୟା ଯାଇ ଗୋ ॥

ଶ୍ଳୋକଃ ।

ହସ୍ତସ୍ରସ୍ତବିଲାସବଂଶମନୃଜୁ ଭ୍ରୂବଲ୍ଲୀ ମଦଲ୍ଲଵୀ
ବୃନ୍ଦୋତ୍ଥାବଦୃଗନ୍ତୈ ବୀକ୍ଷିତମତ ସ୍ୱେଦାର୍ଦ୍ର ଗଣ୍ଡସ୍ଥଲଂ ।
ମାମୁଦ୍ୱୀକ୍ଷ ବିଲକ୍ଷିତ ସ୍ମିତ ସୁଧାମୁଗ୍ଧାନନଂ କାନନେ ।
ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମିଚ ।

ଦୀର୍ଘ ଛନ୍ଦ ।

ଶୁନ ଅଟଗୋ ସହଚରୀ; ଗୋବିନ୍ଦ ବ୍ରଜସୁନ୍ଦରୀ; ବୃନ୍ଦଲୟୁଁ । କେଳି କରୁଥିଲ । ତାକେ ଦଖି ଅମି ହାସି; ଢାଲ ଯିବେ ମୋହନବଂଶୀ; ହସ୍ତ କାମ୍ପି ଖସିଯାଇ ପଡ଼ିଲ ଗୋ । ସଖି ଗୋ । ଥର୍ୟାଗେଲ ଅମାକେ ସେ ଦଖି ଗୋ; କେନେ ଦେଖିଲ ତାକେ ଅମି ଦୁଃଖୀ ଗୋ । ୧ । ମାଲମନ ଭୃବଲତା; ନନ୍ଦନ ଯେମନ ଭୃଲତା; ଯନ୍ତ୍ରକରେ ଗୋପିମାର ତୁଲେ । ସେ ଚଞ୍ଚଳ କୁଆ ଗେଲ; ସୁସମଜଣ୍ଡ କପୋଲ; ଗଣ୍ଡସ୍ଥଲ

ପୂର୍ଣ୍ଣ ସ୍ୱେଦ ଜଳେ ଗୋ । ସଖି ଗୋ; ଥର୍ୟା ଗେଲ ଆମାଦେର ସେ ଦଶି ଗୋ; କେନ କୈଲ ତାକେ ଅମି ଦୁଃଖୀ ଗୋ । ଅଧର କରେ ବିଡ଼ମ୍ବ; ଉସ ସ୍ଥାନ ପକ୍ବବିମ୍ବ; ତାତେ ଛିଲ କତ ସୁଧାରସ । କୁଥାଁ ସେ ଶୁଖିଆଁ ଗେଲ; ମିଠା ସ୍ଥାନେ ସିଠା ହୈଲ; ଧରା ଦ୍ରୈର ଯେମନ ବିରସ ଗୋ । ସଖି ଗୋ, ଥର୍ୟାଗେଲେ ଅମାଦେ ସେ ଦଶି ଗୋ; କେନେ କୈଲ ତାକେ ଅମି ଦୁଃଖୀ ଗୋ ।

ଶ୍ଲୋକଃ ।

ଦୂରନ୍ନେକ ସ୍ତୋକ ସ୍ତବକନବକା ଶୋକକଳିକା-
ବିକାଶଃ କାସାରେ ପବନପବନୋଽପି ବ୍ୟଥୟତି ।
ଅପି ଭ୍ରାମ୍ୟ ଭୃଙ୍ଗୀରଣିତରମଣୀୟାନ ମୁକୁଳ-
ପ୍ରସୂତି ସ୍ତୁତାନାଂ ସଖି ଶିଖରଣୀୟଂ ସୁଖୟତି ।

ଦୀର୍ଘଛନ୍ଦ ।

ତାକେ କୈଲ ଅମି ଦୁଃଖୀ; ଅବେ ହୈଲ ନବମାଖି; ଦୂରନ୍ତ ନେକନ-ସ୍ତୋକକର । ସ୍ତୈବକ ନବମାଲିକା; ନିଅଳ ଶୋକ କଳିକା; ବିକାଶ କାସାରେ ଧୂମାଧୁମ୍ର ଗୋ । ସଖି ଗୋ, ସେଇ ଅବେ ଅଛା ସୁଖ ଦଏ ତାକେ ଦଖି କାମେ ଅମାର ଗାଏ ଗୋ । ୧ । ଉପବନେର ପବନ, କଥା କରେ ଉନମନ, ଭୃଙ୍ଗି ଭୃଙ୍ଗ ଭ୍ରମେ ମତ୍ତଭରେ । ରମନ୍‌କରେ ଟୈତବନେ, ମୁକୁଳ ମକରନ୍ଦପାନେ, ରମଣୀୟ ଝଙ୍କୃତ ସୁସ୍ୱରେ ଗୋ । ସଖି ଗୋ, ସେଇ ଅବେ ଅଛା ସୁଖ ଦଏ, ତାକେ ଦଖି କାମେ ଅମାର ଗାଏ । ୨ । ଅଭିନବ ଘନଶ୍ୟାମ, କୋଟିକାମ ଅଭିରାମ, ସୁରସ ସନ୍ଦୋହ ପୁରନ୍ଦର । ସକଲି ଇନ୍ଦ୍ରିୟ ଗନ, ତାକେ ଅବେ କର ଧ୍ୟାନ, ଶ୍ରୀଚନ୍ଦନ ବୋଲେ ସେ ତୁମାର ଗୋ । ଶ୍ରୀରାଧେ, ଆରାଧନା କର-ଅଛ ସଦା; ଅବେ ଯେନ ତୁମାର ନାମ ରାଧା ଗୋ । ୩ ।

ଭୂହ୍ବା ।

ରାଈ ବୋଲେ ଶୁହଁ ଲଳିତାକେ, ସମ ନଏ ସଖି କାମ ତାକେ । ୧ । ସମ ନଏ କାମ ସମ ନଏ, ରସମୟ ତନୁ ଶ୍ୟାମରାୟ । ହବେନାଇ ହବେନାଇ ହବାର ନାଇଁ ଗୋ, ନୀଳମଣି ତନୁ ତୁଲ ନାଇଁ ଗୋ । ୩ ।

ଶ୍ଲୋକଃ ।

ସୌନ୍ଦର୍ଯ୍ୟାମୃତସିନ୍ଧୁଭଙ୍ଗଲଲନାଚିତ୍ତାଦ୍ରିସଂପ୍ଲାବକ ।
କର୍ଣ୍ଣାନନ୍ଦସନର୍ମରମ୍ୟବଚନା କୋଟୀନ୍ଦୁସୀତାଙ୍ଗକଃ ।
ସୌରଭ୍ୟାମୃତସଂପ୍ଲବାବୃତଜଗତ୍ପୀୟୂଷରମ୍ୟାଧର ।
ଶ୍ରୀଗୋପେନ୍ଦ୍ର ସୁତଃ ସଂକର୍ଷତି ବଲାତ୍ପଞ୍ଚେନ୍ଦ୍ରିୟାଣ୍ୟାଲିମେ ।

ଦୀର୍ଘଛନ୍ଦ ।

ଶ୍ରୀଅଙ୍ଗ ଅହ୍ଲାଦ ମୟେ; ଛତ୍ର ଚନ୍ଦ୍ର ଧ୍ୱସ୍ତ ହଏ; ବଢ଼ିଯାଏ ସୌଭାଗ୍ୟ ମୃତନଦୀ । ବୃନ୍ଦାବନ ବନଭୂଇଁ: ସବଦଗ ପୂର୍ଣ୍ଣହୋଇ; ଚଉଦ ଭୁବନ ଯାଏ ଭେଦ ଗୋ । ସଖି ଗୋ; ଅମିତ ଅବଳା ବଳାତ୍କାରେ: ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ତନୁ ଉଗ୍ରଉଲ ସିଦ୍ଧକାରେ ଗୋ । ୧ । ବାଲ ଅରୁଣ ପ୍ରବାଲ; ବନ୍ଧୁଜୀବ ନବଦଲ; ଉସ୍ନମ୍ଳାନ ପକ୍ୱ ବିମ୍ବାଧର । ଅଖିଳ ଲାବଣ୍ୟ ପୂର; ପିୟୂଷ ରସ ମନ୍ଦର: ଛାଡେ ମନ୍ଦହାସ ସୁମଧୁର ରେ । ସଖି ରେ; ଅମିତ ଅବଳା ବଳାତ୍କାରେ; ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୨ । ବୃନ୍ଦାବନ ପୂର୍ଣ୍ଣ ଇନ୍ଦୁ; ସୌନ୍ଦର୍ଯ୍ୟ ଅମୃତ ସିନ୍ଧୁ; ଏକ ବିନ୍ଦୁ ଜଗତ ଡୁବାଏ । ଉମା ରମା ଶଚୀ ଆଦି, ଲଳନା ମାନସ ଅଦ୍ରି; ଭଜନ୍ତ ଧ୍ୱଂସନେ ବଜ୍ର ହଏ ଗୋ । ସଖି ଗୋ ଅମିତ ଅବଳା ବଳାତ୍କାରେ; ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୩ । କର୍ଣ୍ଣାନନ୍ଦ ପରିହାସ; ରମ୍ୟ ମନୋହର ବେଶ; ଲାବନି ମଞ୍ଜୁଳ ସୁକୋମଳ । ଦ୍ରାକ୍ଷାରୁ ସୁସ୍ୱାଦୁ ପୂର; ଅମୃତରୁ ଅତି ମଧୁର; ଚନ୍ଦନୁ ଅଧିକ ସୁଶୀତଳ ଗୋ । ସଖି ଗୋ ଅମିତ ଅବଳା ବଳାତ୍କାରେ, ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୪ । ଶ୍ରୀଗୋପେନ୍ଦ୍ର ନନ୍ଦସୁତ, ସର୍ବ ବ୍ରତ ବିଭୂତ, ନାରୀ ମନ ରତ୍ନ ଅଳଙ୍କୃତ । ଗୋପୀ ନେତ୍ର ନୀଳୋତ୍ପଳ; ମାଳ ସର୍ବାଙ୍ଗେ ଏକୋଜ୍ୱଳ; ମନ୍ମଥ ମନ୍ମଥ ଅତ୍ରାକୃତ ଗୋ । ସଖି ଗୋ ଅମିତ ଅବଳା ବଳାତ୍କାରେ, ପଞ୍ଚେନ୍ଦ୍ରିୟ ଅକର୍ଷନ କରେ ଗୋ । ୫ ।

ଚୁହ୍ଲା ।

ବୃନ୍ଦାବନ ଚନ୍ଦ୍ର ପୂର୍ଣ୍ଣ ଇନ୍ଦୁ; ରସିକ ଶେଖର ବ୍ରଜବନ୍ଧୁ । ୧ ।
ଦ୍ରାକ୍ଷାରୁ ଅଟେ ଅତି ମଧୁର; ଚନ୍ଦନୁ ଅତ୍ୟନ୍ତ ସୁଶୀତଳ । ୨ ।
ଅମିତ ଅବଳା ନାରୀଗନ; ପଞ୍ଚେନ୍ଦ୍ରିୟ କରେ ଅକର୍ଷନ । ୩ ।
ମନ୍ମଥ ପୀଡେ଼ ଅମାର ଗାଏ; କି କରିବୁଁ କହସି ଉପାଏ । ୪ ।

ଶ୍ଳୋକଃ ।

ନବାମ୍ବୁଦଲସଦ୍ଦ୍ୟୁତନବତଡୀନ୍ମନୋଜ୍ଞାମ୍ବରଂ ।
ନିଭର୍ଣ୍ଣୀରୁଚିରକ୍ୱିତ ଲଲିତବନ୍ୟ ବେଶୋଜ୍ଜ୍ୱଳଃ ।
ସୁଧାଂଶୁମଧୁରାନନଃ କମଲକାନ୍ତିଫୁଲ୍ଲେଚନଂ ।
ଶ୍ୟାମ ମଦନମୋହନଃ ସଖି ତନୋତି ନେତ୍ର ସ୍ପୃହାଂ ।

ଦୀର୍ଘଛନ୍ଦ ।

ଅଭିନବ ଜଳଧର; କମନୀୟ କଳେବର; ଧିକ୍କୃତ କରଇ ନୀଳମଣି । ଝଟଝଟ ବିଦ୍ୟୁଝଟୀ; ପରିଧାନ ପୀତପଟୀ; ସୁରୁଚିର ତ୍ରିଭଙ୍ଗିମା ଠାଣି ଗୋ ।

ସଖି ଗୋ । ଏଇ ମୂର୍ତ୍ତି ପ୍ରତେ ହଏ ନେନେ । ପୁଲକ ପୂରଇ ଅବେ ଗାନେ ଗୋ । ୧ । ସୁଲଳିତ ବନ୍ୟବେଶ, ମନୋହର ମନଭ୍ରଂଶ, ଶିରେ ଶୋଭ୍ର ରଙ୍ଗ ଯାମୁଡ଼ାଳି । ନବୀନପଲ୍ଲବ ପୁଞ୍ଜ, ନାଅଲି ସ୍ତବକ ସ୍ୱଚ୍ଛ, ଅଜାନୁଲମ୍ବିତ ବନମାଲୀ ଗୋ । ସଖିଗୋ । ଏଇ ମୂର୍ତ୍ତି ପ୍ରତେ ହଏ ନେନେ । ପୁଲକ ପୂରଇ ଅବେ ଗାନେ ଗୋ । ୨ । ନିର୍ମଳ ଶରଦପୂର୍ଣ୍ଣ-ସୁଧାଂଶୁ ମଧୁରବନନ, ଝଲକ କନ୍ଦର୍ପ ଦରପନ । ଅମଲ କମଲଦଲ, ଜିନ ନୟାନ ସୂତ୍ରଲ, କତମତ ମଦନମୋହନ ଗୋ । ସଖି ଗୋ । ଏଇ ମୂର୍ତ୍ତି ପ୍ରତେ ହଏ ନେନେ, ପଲକ ପୂରଇ ଅବେ ଗାନେ ଗୋ ॥

ଦୂହା ।

ସୁଲଳିତ ଲବଣ୍ୟ ସେ ବେଶ । ମନ ମଧୁକରେ ହଏ ଭ୍ରଂଶ । ୧ ।
ଶିରେ ଶୋଭ୍ର ରଙ୍ଗ ଜାମୁଡ଼ାଲି । ଧଏ କାମିନୀର ଧୈର୍ଯ୍ୟ ଟାଲି । ୨ ।
ନବୀନ ପଲ୍ଲବ ତଥି ସାଜେ । ନାଅଲି ସ୍ତବକ ମନ ଗଞ୍ଜେ । ୩ ।
ଅଜାନୁଲମ୍ବିତ ବନମାଳ । ପୁଲକିକରେ ହୃଦ ଅମାର । ୪ ।
ନିର୍ମଳ ଶରଦ ପୂର୍ଣ୍ଣାନନ । ଝଲକ କନ୍ଦର୍ପ ଦରପନ । ୫ ।
ଅମଲ କମଲ ଜିନ ନେନ । କୁଳବତୀର ସ୍ୱରେ ମହନ୍ତୁ । ୬ ।

ଶ୍ଳୋକଃ ।

ନବଜଳଦ ନିଃସ୍ୱନ ଶ୍ରବଣ କର୍ଷ ପିଞ୍ଜିତ ।
ସନତ୍ରବଚନାମୃତେ ସ୍ନପିତ ଭାମିନୀମାନସ ।
ରମାଦିକା ବରାଙ୍ଗନା ଶ୍ରବଣହାରି ବଂଶୀକଲ ।
ଗମେ ମଦନମୋହନ ସଖି ତନୋତୁ କର୍ଣ୍ଣସ୍ପୃହାଂ ।

ଦୀର୍ଘଛନ୍ଦ ।

ନାରାୟଣ ମନୋହାରୀ, ଲକ୍ଷ୍ମୀର ଶ୍ରବଣହାରୀ, ସ୍ତମ୍ଭନ ମୋହନ ଉଚ୍ଚାଟନ । ଅବ୍ୟକ୍ତ ମଧୁରଯନ୍ତ, କାମ ଉଦ୍ଦୀପନମନ୍ତ ମଦନମୋହନ ବଂଶୀସ୍ୱନ ଗୋ । ସଖି ଗୋ । ସେଇ ଧ୍ୱନି ଶୁଭେ ଅବେ କାନେ, କାନେ ପଶି ଅମାର ପ୍ରାଣ ଟାନେ ଗୋ । ଗମ୍ଭୀର ଜଳଦଘୋଷ, ବଂଶୀସ୍ୱନ କରେ ଧ୍ୱଂସ, ସ୍ତମ୍ଭନ ଗୁନ ଛାତେ । ପତିବ୍ରତା ବ୍ରତମନ, ମନ୍ଥନେ କରାଏ ସ୍ୱନ ପରହାସ ବଚନ ଅମୃତେ ଗୋ । ସଖି ଗୋ । ସେଇ ଧ୍ୱନି ଶୁଭେ ଅବେ କାନେ ପଶି ଅମାର ପ୍ରାଣ ଟାନେ ଗୋ ॥

ଦୂହା ।

ସ୍ତମ୍ଭନ ମୋହନ ଉଚ୍ଚାଟନ, କର୍ଣ୍ଣେ ବାଜି କରଇ ଉଷ୍ଣନ । ୧ ।
ଅବ୍ୟକ୍ତ ମଧୁର ଧ୍ୱନି ପୂର, କାମ ଉନ୍ମାଦେ ହୁଅଇ ଘାର । ୨ ।

ମଦନ ମୋହନ ବଂଶୀ ସ୍ୱନ, ଦହଇ ଅମାର ପଞ୍ଚପ୍ରାନ । ୩ ।

ଶ୍ଳୋକଃ

କୁରଙ୍ଗ ମଦଜାଦ୍‌ବପୁ ପରିମଳୋମିକୃଷ୍ଣାଙ୍ଗକ ।
ଶକାଙ୍ଗ ନଳିନାଷ୍ଟକେ ଶଶୀ ଯୁତାବଗନ୍ଧଃ ପ୍ରଥ ।
ମଦେନ୍ଦୁବରଚନ୍ଦନାଗୁରୁ ସୁଗନ୍ଧ ଚର୍ଚ୍ଚିତ ।
ଶମେ ମଦନମୋହନ ସଖି ତନୋତି ନାସାସ୍ପୃହାଂ ।

ଦୀର୍ଘଛନ୍ଦ ।

ମୃଗମଦ ମଦଜାତ, ବପୁ ଅପ୍ରୁବ ମିତ, ପରସିଲ ଲହର ତରଙ୍ଗ । ସେ ଅଙ୍ଗେ ଅଷ୍ଟ ନଲିନ, ସୌରଭ କର୍ପୂର ଉସ୍ତ୍ରନ, ଚନ୍ଦ୍ର ପଦ୍ମ ସୁଶୀତଲ ସଙ୍ଗରେ । ସଖିରେ; ସେଇ ଗନ୍ଧ ଅସଇ ନାସାତେ, ଅଘ୍ରାନ କରହ ଅଚମ୍ବିତରେ । ପୁନଃ ପୁନଃ ସ୍ନେହ କରେ, ପାପ ନାସା ଅଶାଭରେ, ମଦନମୋହନ ସୁଗନ୍ଧତେ ରେ । ଚନ୍ଦନ ଚର୍ଚ୍ଚିତ ଗୃରୁ, ଚର୍ଚ୍ଚିତ ଗୁରୁ ଅଗୁରୁ, ମଲ୍ଲିକାଦି ପାରିଜାତ ମାଲ । ଶୋଭା ନଦୀ ବଢ଼ାଓଲ, ସକଲି ସୁଗନ୍ଧ ଜଲ, ଡୁବାଇଯିଁା ନାସା ବେନି କୂଲ ଗୋ । ସଖି ଗୋ, ସେଇ ଗନ୍ଧ ଅସଇ ନାସାତେ, ଅଘ୍ରାନ କରହ ଅଚମ୍ବିତେ ଗୋ । ଅଘ୍ରାନ କରତେ ଗନ୍ଧ, ମନ ହଇଛେ ଅନନ୍ଦ, ଅମି ଅଭାଗିନୀ କର୍ମହୀନ ଗୋ । ଧନ୍ୟା କନ୍ୟା ଗନସଙ୍ଗେ, ବିହାର କରିଲ ରଙ୍ଗେ, ସେ ଲଗି ଦହଲ ପଞ୍ଚପ୍ରାନ ଗୋ । ସଖି ଗୋ, ତା ଲଗି ହଇନୁ ଅମି ଦୁଃଖୀ, ଅବେ କି କରିବ କହ ଦୁଖି ଗୋ । ୩ ।

ଶ୍ଳୋକଃ

ହରିନ୍ମଣି କବାଟିକା ପ୍ରତିତ ହାରି ବକ୍ଷସ୍ଥଲେ ।
ସୁରାରି ତରୁଣୀ ମନଃ କଳୁଷ ହାରି ଦୋହର୍ଗଲ ।
ସୁଧାଂଶୁ ହରି ଚନ୍ଦନୋତ୍ପଳ ଶିତାଭ୍ରସିତାଙ୍ଗକ ।
ଶମେ ମଦନମୋହନ ସଖି ତନୋତି ବକ୍ଷସ୍ପୃହାଂ ।

ଦୀର୍ଘଛନ୍ଦ ।

ମହାନ୍ଦ୍ର ନୀଲ କପାଟ, ତାର ଭୁଜ ବକ୍ଷ ତଟେ, ଝଟ ଝଟ ରସାନ ଯେମନ୍ତ । ସୁରାରୀ ତରୁଣୀ ମନ, କଳୁଷ ତାପ ମୋଚନେ, ଯୁଗଳ ଅର୍ଗଲ ବାହୁ ବେନି ରେ । ସଖିରେ, ହୃଦେ ଅମାର ଏଇ ସ୍ପୃହା ହଏ, କେ ଅନି ମିଲାବ ଗାଏ ଗାଏ ରେ । ଚନ୍ଦ୍ର ଚନ୍ଦନ ଉଜ୍ବଲ, ଶୁଭ୍ର ଅଭ୍ର ସୁଶୀତଲ, ସର୍ବାଙ୍ଗ ଅହ୍ଲାଦ ସୁମାଧୁରୀ । ସେଇ ଅଙ୍ଗେ ଅଲିଙ୍ଗନ, ଦବେ ମଦନ ମୋହନ, ସଦେ ଏଇ ଭାଗ୍ୟ ଅଛେ କାର ଗୋ । ସଖି ଗୋ, ହୃଦେ ଅମାର ଏଇ ସ୍ପୃହା ହଏ; କେ ଅନି ମିଲାବ ଗାଏ ଗାଏ

ତାର ଗର୍ବ ଚନ୍ଦ୍ରମା ଦଳିଲ, ପୂର୍ଣ୍ଣଚନ୍ଦ୍ର ପୂର୍ବେ ଉଦେ ହେଲ । ୩ ।
ଝଳଝଳି ଗଗନ ମଣ୍ଡଳେ, ତାରାଗଣ ଲୟାଁ କୁତୂହଳେ । ୪ ।
କୁମୁଦ ଫୁଟି ମୃଦ ପଦ୍ମିନୀ, ମଉଳଙ୍ଗ ଚଳୁଛନ୍ତି ଧୂନି । ୫ ।

ପୟାର ।

ଏହି ସମୟରେ ପ୍ରିୟସଙ୍ଗିନୀ ଲଳିତେ, ଲଳିତ ବଚନ କହେ କଣୋଙ୍କ ଅଗ୍ରତେ ଗୋ । ୧ । ତୁମାର ଚରଣେ ପ୍ରଣପତ୍ୟ କର ହରି, ରଖିଅ ଗ୍ଟହ ବଚନ ମୃଦୁଳ ମାଧୁରୀ ଗୋ । ୨ । ମଞ୍ଜୁଳ ବଞ୍ଜୁଳ କୁଞ୍ଜେ କଣଲୟ ଶେଯେ, ପଥେ କଯ୍ୟାଥିବେ ତୁମାର ଗମନ କାଯେ ଣୋ । ୩ । ମୂଦ୍ୱେ ମଦୁମନ୍ତନେର ତାପ ମନ୍ଥନ କର, ଅନୁଗତ ପ୍ରିୟେ ଶୀଘ୍ରେ ଯାୟାଁ ଅନୁସର ଗୋ । ୪ । ସଘନ ଜଘନ ସ୍ତନଦ୍ୱୟ ଭାର ଭରେ, ମନ୍ଦମନ୍ଥର ଚରନ ଗମନ ମନ୍ଥରେ ଗୋ । ୫ । ତରଳ ମଳ ମଞ୍ଜିର ମଗ୍ନଳେର ଧ୍ୱନୀ, ଅବର୍ଣ୍ଣମଣ୍ଡନାମଣ୍ଡି ବଯୀନ ଅବନୀ ଗୋ ।୬। ତଲ୍ଲଣ କନ ମୋହନ ରମଣୀୟତର, ନେ ଗୁନମନ ଗନ୍ଧେ ମଧୁପ ସୁନ୍ଦର ଗୋ । ୭ । ତାମକେ ଅନୁଶାସନ ବନ୍ଦନ କରେ ପାକ, ଏହି ଉଦ୍ଦୀପନେ ଭଜ ପ୍ରାନେଶ ନାୟକ ଗୋ । ୮ । ପବନେ ତରଲ ନବ ପଲ୍ଲବ କଦମ୍ବ, ପ୍ରଲମ୍ବ କେଶିନ ହେର ଲତା ନିକୁରମ୍ବ ଗୋ । ୯। ତବ ଅଗମନ ଜାନି ପ୍ରାନପ୍ରିୟ ଛନ୍ତି, ନା କର ବପ୍ତନ୍ତ ଗତ ବିଲମ୍ବ ଗମନ ଗୋ । ୧୦ । ସ୍ଫୁରିତ ଅନଙ୍ଗ ରଙ୍ଗ ତରଙ୍ଗେର ବଶ ରଚନାକର ହରରେ ପରିରମ୍ଭେ ତୋଷ ଗୋ । ୧୧ । ନିରମଳ ମନୋହରହାର ଶୋଭାକର, ଉଚ୍ଛଳିତ କୁଚ କୁମ୍ଭ ଯଥା ଜଳଧାର ଗୋ । ୧୨ । ସ୍ୱର୍ଣ୍ଣ ସମୁଦାୟ ଲୟାଁ ତବ କଳେବର, ସଜହେଛେ ରତିରନେ ଯୋଦ୍ଧା ପରକାର ଗୋ । ୧୩ । ରସଞ୍ଚ ରସନା ମାର ଢ଼ଣ୍ଡିମା ବାଦନେ, ସୁରସେ ସରସେ ଲଜ୍ଜା ନାଶିହ ଢୋପନେ ଗୋ । ୧୪ । ସ୍ମରଣରେ ଭଗ ସୁମୁଖେ ଶଶୀମୁଖୀ, କାନ୍ତ ସହ ନିଳା ଅବଲମ୍ବେ କର ସଖି ଗୋ । ୧୫ । ଚଞ୍ଚଳ ବଳୟ ଗୃଚ୍ଛ ନିନଦ କନିତେ, ବୋଧକର ନିଜ ପତି ମିଳନ ଏକାନ୍ତେ ଗୋ । ୧୬ । କୁଞ୍ଜେ ନିକୁଞ୍ଜବିହାରୀ ପାଶେ ଗମନକର, ଏହି ଅନୁକୁଳେ ଶ୍ରୀଚନ୍ଦନ ଦୁଃଖ ହର ଗୋ । ୧୭ ।

ଓଡ଼ହା ।

ଲଳିତା କହନ୍ତି ମୃଦୁବାଣୀ, ତବ ବିରହରେ ଦୁଃଖୀ ନୀଳମଣି । ୧ ।
ତୁମାର ପ୍ରାନପ୍ରିୟା ମନ ଛନ୍ନ, ନା କର ଗୋ ବିଲମ୍ବେ ଗମନ । ୨ ।
କୁଞ୍ଜବିହାରୀର ପାଶେ ହେର, ଶ୍ରୀଚନ୍ଦନ ଦୁଃଖ ବେଗେ ହର । ୩ ।

ଶ୍ଳୋକଃ ।

ସା ମାଂ ଦକ୍ଷ୍ୟତି ବକ୍ଷ୍ୟତି ସ୍ମର କଥାଂ ପ୍ରତ୍ୟଙ୍ଗ ମାଲିଙ୍ଗନୈଃ ।

ପ୍ରୀତିଂ ଯାସ୍ୟତି ରସ୍ୟତେ ସଖୀ ସମାଗତେ୍ୟତି ସଖିନ୍ଦ୍ରଯୂନଃ ।
ସ ତ୍ୱାଂ ପଶ୍ୟତି ବେପତେ ପୁଲକୟେତ୍ୟାନନ୍ଦତି ସ୍ୱିଦ୍ୟତି ।
ପ୍ରତ୍ୟୁଦ୍ଗଚ୍ଛତି ମୂର୍ଚ୍ଛତି ସ୍ଥିରତମଃ ପୁଞ୍ଜେ ନିକୁଞ୍ଜେ ପ୍ରିୟଃ ।

ପୟାର ।

କାନ୍ତକେ ଲୋକନ କର ସୁନ୍ଦରୀକାଥା ରଖି, ପ୍ରତ୍ୟେକଙ୍କ ଅଙ୍ଗେ ସେ ପ୍ରୀତ ତା ସଙ୍ଗତେ ସଖି ଗୋ । ୧ । ଗମନେ ସକଳ ସଖି ଶାନ୍ତାକୁଲ୍ୟ ମୁଖି, ରତିରସେ ସୁମଧୁର ମଧୁ ଲାଗି ବଞ୍ଚ ଗୋ । ୨ । ପ୍ରଥମେ ତୁମାକେ ହେର କାନ୍ତ କମ୍ପା ହବେ, ପୁଲକେ ଅନନ୍ଦ ସ୍ୱେଦ ପାଙ୍ଗେଟି ଅସିବେ ଗୋ । ୩ । ତାର ଯେଇ ପୁଣ ହଏ ସେ ତୁମାର ବାଞ୍ଛା, ସ୍ଥିରତମ ପୁଞ୍ଜ କୁଞ୍ଜେ ପ୍ରିୟ ଯାବେ ମୂର୍ଚ୍ଛା ଗୋ । ୪ ।

ଶ୍ଳୋକଃ ।

ଅକ୍ଷ୍ଣୋର୍ନିକ୍ଷିପଦଞ୍ଜନଂ ଶ୍ରବଣୟୋସ୍ତାପିଞ୍ଛ ଗୁଚ୍ଛାବଲୀଂ ।
ମୂର୍ଦ୍ଧ୍ନି ଶ୍ୟାମ ସରୋଜଦାମ କୁଚୟୋଃ କସ୍ତୂରିକା ପତ୍ରକଂ ।
ଧୂର୍ତ୍ତାନାମଭିସାର ସତ୍ୱର ହୃଦାଂ ବିଷ୍ୱକ୍ ନିକୁଞ୍ଜେ ସଖି ।
ଧ୍ୱାନ୍ତଂ ନୀଲ ନିଚୋଲ ଚାରୁ ସଦୃଶାଂ ପ୍ରତ୍ୟଙ୍ଗମାଲିଙ୍ଗତି ।

ପୟାର ।

ନୟନଯୁଗଳେ ଚାରୁ ଅଞ୍ଜନେ ରଞ୍ଜନ, ତମାଲେର ଗୁଚ୍ଛାବଲୀ ଶ୍ରବନେମଣ୍ଡନ, ଗୋ । ୧ । ଶିରେ ନୀଲପଦ୍ମ କରେ ମର୍କତ ବଲୟ, କୁଚେ ମୃଗମଦ ଚାରୁ ଚିତ୍ର ରମଣୀୟ ଗୋ । ୨ । ପ୍ରତ୍ୟଙ୍ଗେ ନୀଲ ବସନ କୃତ ଅଲଙ୍କାର, ଏହି ହଏ କୃଷ୍ଣ ଅଭିସାରେର ଲକ୍ଷନ ଗୋ । ୩ । ଅଜ ପୂର୍ଣ୍ଣିମା ରଜନୀ ଚାରୁ ଚନ୍ଦ୍ରାନନ, ପୁଷ୍ପଗନ୍ଧେ ମନ୍ଦେ ମନ୍ଦେ ବହେ ବହୁବାତ ଗୋ । ୪ । ସେହୁ ଦେଖି ଜନାଅଙ୍କ ଅଲସେ ଶୀତଲ, ସୁସ୍ୱନ୍ଦେ ଚଲହ ରାଧେ ନିକୁଞ୍ଜମନ୍ଦିର ଗୋ । ୫ ।

ଶ୍ଳୋକଃ ।

କାଶ୍ମୀର-ଗୌରବ-ପୁଷା ମଭିସାରିକାଣା-
ମାବଦ୍ଧ ରେଖ ମଭିତୋ ରୁଚ ମଞ୍ଜରୀଭିଃ ।
ଏତତ୍ତମାଲ ଦଲନୀଲତମଂ ତମିଶ୍ରଂ ।
ତତ୍ପ୍ରେମ ହେମନିକଷୋ ପଲତାଂ ତନୋତି ।

ପୟାର ।

ସବ ସଖି ସାଥେ ଲୟା ଜବେ ତୁମି ଯାବେ, ତମାଲବନେ ଅନ୍ଧକାର ପଥରେ ମିଲିବେ ଗୋ । ୧ । ତପ୍ୟାଥିବ ଚନ୍ଦ୍ରକସ ଘୋର ଅନ୍ଧକାରେ; ସଖି ସଖି ଏ ବକୁଲ ତମାଲ ତମରେ, ଗୋ । ୨ । କାଶ୍ମୀର ଗଭର ତନୁ ସବସଖି

ଛୁଲେ, ଅଭିସାରି ହୋଇ । ମିଳିଯାଇବ ସେହି ସ୍ଥଳେ ଗୋ । ୩ । ହେମ ଜାକସା ଉପରେ ଅଳଙ୍କାର ଦେଖା, ଏ ସବ ରଚି ମଞ୍ଜିରି କୁନ୍ଦନେର ରେଖା ଗୋ । ୪ । ବନ ଅନ୍ଧକାର ପଥ ଏକ ଶୋଭା କରି, ସଖିରେ ଶ୍ରୀମତୀ ରାଧେ ହୟ ଅଭିସାରି ଗୋ । ୫ ।

ଚକ୍ରପଦୀ ।

ଅଗୋ ରାଧେ ସେ ମୋହନେ ମାନକରୁ କାହିଁକି, ମିଛେ ବୋଲି ମୁଁ ତାଙ୍କର ସଙ୍ଗକୁ ବଞ୍ଚାଇ କି । ଘୋଷା । ଧନମଧ୍ୟେ ଧନଈଶ ପୂଜୁ ଯାହା ପାଇଁ କି, ଜଳଶାୟିରେ ପରି କରୁ ଜଳସାହିକି । ୧ । ନୀଳ ଗଜର ସୁମନ ଗୁନ୍ଥ ଯାହା ପାଇଁ ତ, ତାର ସ୍ନେହେ ବହିଥାଇ ମରକତ ବାହୁକି । ୨ । ଜଣାଅଛୁ ଯେବେ ଭଜିଥିଲୁ ଅବବାହିକି, ନାମ ଶୁଣି ଉଣ୍ଡହାର ଦେଇଛୁ ବଧାଇ କି । ୩ । ଯାହାର ମୁରଲୀ ଗୀତେ ଲକ୍ଷ୍ମୁ ସୁଖ ପାଇକି, ମୋର କର ଧରି ପଠିଅଇ ତାର ଡହିଁକି । ନିଜ ଜନେ ପର କଲେ ଏଥି ଯଶ ପାଉକି, ଅପଣାର ବ୍ୟାଧିହେଲେ ପରରେ ବଥାଇକି । ୫ । କାମଦ ବକ୍ଷରି ହୃଦେ ବାମ ଗୁଣ୍ଡି ଥାଇକି, ସୁଧାକର ଚକୋରକୁ ଗରଳ ଚଖାଇକି । ୬ । କମଳ ଚୁମ୍ବିବା ଅଳି କୁଟ ଯେ ନ ଯାଇକି, ପୁଣି ତା ପାଶେ ଅସନ୍ତେ ସେ କରେ କି ନାହିଁକି । ୭ । ବୋଲେ ଶ୍ରୀଚନ୍ଦନ ଅହେ ରାଧେ ହେଲି ବାଇକ, ଏ ରାତିକି ଛନ୍ଦି ଭଜ ନବୀନ କହ୍ନାଇକ । ୮ ।

ପୟାର ।

ଶୁନିତେ ଶ୍ରୀମତୀ ହୃଦ ଗଦ୍ଗଦ ଆନନ୍ଦ, ଶ୍ରୀମୁଖ ଉଦୟ ଯେନ ପୂର୍ଣ୍ଣିମାର ଚନ୍ଦ୍ର ହେ । ୧ । ହେନକାଳେ ଘନଶ୍ୟାମ ଅଙ୍ଗଭିକ୍ଷା ପାୟ, ପୂର୍ଣ୍ଣମାସୀ ଯୋଗମାୟା ରଞ୍ଜନ କୈଲ୍ୟ ମାୟା ହେ । ୨ । ବୃଷଭାନୁପୁରେ ଯତ ପୁରୁଷ ଯୁବତୀ, ରାଗଦ୍ୱେଷି ଜନା ଅଚେତନେ ଅଛେ ଶୁତି ହେ । ୩ । ବାଲ ବୃଦ୍ଧ ଯୁବାଜନ ଘରାଇ ଅଙ୍ଗନେ, ଅଞ୍ଚଲ ଚିଞ୍ଚଲ ତବେ ବୁଝି ସଖୀଗନେ ହେ । ୪ । କାଶୋରି ଚରନ ପଦ୍ମତଳେ ଲଙ୍ଘିଲ, ବୋଲେ ଶ୍ରୀ ଚନ୍ଦନ ରାଜବେଶ ବାଜେ କୈଲ ହେ । ୫ ।

ଯଥାରାଗ ।

ଯାବଟ ବାହାର, କୈଇ କୁନସଙ୍ଗେ, ମିଲି ବୃନ୍ଦାବନ ପାଶ ହେ ।
ପେଖିୟେ ଲଲିତା, ସମ୍ଭବ ସମ୍ଭାର, ଅଗେ ହୈଲ ପରବେଶ ହେ ।
ରାଧେ ଭଣାଣାର ସାଥେ, ଶୀଘ୍ରେ ମିଲିଲ ଏହେନ ପଥେ ହେ । ୧ ।
ରାଜ ଉପଗୁରୁ, ବନ୍ଧୁ ପରଗୁର ତବେ କୈଲ ସବେ ମିଲି ହେ ।
ମାର୍ଗ ପରସ୍ପର, ଭରେ ପରସ୍ପର, ରଙ୍ଗେ କୁନ ଅଗବଲି ହେ ।
ନୀର ପଙ୍କର ସିଞ୍ଚିଲ, ବୋଲି ଚନ୍ଦନ ଛୁଟିବା ଧଲି ହେ । ୨ ।

କୁନ କୁନ ନାରୀ, ଯାନ୍ତ ଦଲଭର, ପଥରେ ବାହୁଯାଁ ଯାଏ ହେ ।
କୁନ କୁନ ନାରି, ଶ୍ରୀକର୍ପୂର ଧୂଳି, ଫେଳାଯାଁ ଫେଲାଯାଁ ଧାଏ ହେ ।
ମୃଦୁ କୋମଲ ଚରଣ, ଜାନି ପୀଡ଼ାକରେ ନିବାରଣ ହେ ।
ଉଭେ କୁନ ନାରୀ, ଶ୍ୱେତ ଛତ୍ର ଧରି, ଲୁଚେର କନକ ଦଣ୍ଡ ହେ ।
କୁନ ବାଲ କରେ, ଚନ୍ଦ୍ର ସୂର୍ଯ୍ୟ ସହ, ବଶୀକ ନାସ ଉଦଣ୍ଡ ହେ ।
ଯନ୍ତ୍ର ରତ୍ନରଚ୍ଛ ଉନ୍ନଲେ, ପଞ୍ଚ ଝାଲର ଯାଣି ଘଟଲେ ହେ । ୪ ।
କେ ମେଘ ଡମ୍ବର, ଲୟାଁ ଆଡ଼ମ୍ବର, କେ ଖଦ ଚାମର ଧରେ ହେ ।
କୁନ କୁଳାଙ୍ଗନା, ଏକ ଲକ୍ଷ ବାନା, ଉଡାୟାଁ ଗମନ କରେ ।
କୁନ କରେ ରତ୍ନଝାରୀ, ଜଲ ଶୀତଲ ସୁଗନ୍ଧ ଭରି ହେ । ୫ ।
କୁନ ସମ୍ପୁଷ୍ଟି, କରେ ପୁଷ୍ପବୃଷ୍ଟି, ଫୁଲ୍ଲ ଧନୁଶର କରେ ହେ ।
କୁନ କୁନ ବାଲା, ଦଏ ହୁଳହୁଳି, ବୀଣା ଭରତ କରେ ହେ ।
ବାଜେ ମର୍ଦ୍ଦଲ ମନ୍ଦିରା, ମିଳେ ମୁହୁଃ ରଙ୍ଗରେ ଝର୍ଝରି ହେ । ୬ ।
ଧରନ୍ତେ ଲଳିତା, ସ୍ୱର୍ଣ୍ଣବର୍ଣ୍ଣ ରତା, ବାଟିକା ପଟ୍ଟୋରଝୋରି ହେ ।
ବିଶାଖା ଲୟାଛେ କର୍ପୂର ଚନ୍ଦନ, କୁନ୍ଦନ, କଟୋରି ଭରି ହେ ।
ଚମ୍ପା ବଚନ କୁହୁଁଯାଁ, କନ୍ଧେ ନୀଳ ପଟଖଣ୍ଡ ଲୟାଁ ହେ । ୭ ।
ଶ୍ୟାମର ଚାମର, ଚମ୍ପକ ଲତିକା, ସଧୀରେ ଚାଳନା କରେ ହେ ।
ଇନ୍ଦୁରେଖା ଲୟାଁ, ନିର୍ମଳ ଦର୍ପଣ, ଇନ୍ଦୁମୁଖି ଅଗ୍ରେ ଚଲେ ହେ ।
ତୁଙ୍ଗବିଦ୍ୟା ଉନ୍ମାଦନୀ, ରଙ୍ଗେ ମିଳାଏ ପଦ୍ମବାଦନୀ ହେ । ୮ ।
ନୃତ୍ୟରଙ୍ଗେ ଦେବୀ ନୃତ୍ୟକରେ, ସୁଦେବୀ କରଇ ଗାନ ହେ ।
କୋକିଲ ମଧୁର ଝଂକୃତ ମିଳିତେ, ଉନ୍ନତେ ଉସ୍ତୁକେ କର୍ଣ୍ଣ ହେ ।
କାଏ ଦଧି ଦଧି ଡ଼ାକଇ, ମିଛ ନିଅନା କେ ବୋଲେ କାଢ଼େ ହେ । ୯ ।
କେ ଦଲ ଉଡ଼ାଇ, ଦଖାୟା ବଡ଼ାଇ, ଭୁଦାଲୟାଁ ପକ୍ଷୀ ଲୟାଁ ହେ ।
ନକୁଲ ଦେଖିକେ, ବକୁଲ ବାସିକେ, ଠାରିଲ ପ୍ରମତ୍ତ ହୁଏଁ ହେ ।
ବାମପାଶେ ଶିବାଧାଏ, ଦଖେ ଶ୍ୱେତ ପାରା ଉଡ଼୍ୟାଯାଏ ହେ । ୧୦ ।
ଦ୍ୱିଜ କୁଲସ୍ତୁତ, ବେଦଶ୍ରୁତ ହୁଏଁ, ଏବଧି ଚମ୍ପ ନାମାନି ହେ ।
ବୃନ୍ଦାବନେ ଯେତ, ଜୀବ ଜନ୍ତୁ ଅଛେ, ଯୁଗଳ ମଧୁର ଜ୍ଞାନ ହେ ।
ଯେବେ ଜଙ୍ଗମାଦି ସଙ୍ଗ, ତରୁ ନିକଟ କୀଟ ପତଙ୍ଗ ହେ । ୧୧ ।
କୁନ ରସବତୀ, ଅତି ଆନନ୍ଦରେ, ପଦ୍ମଣ୍ଡ ମନାୟାଁ ଚଲେ ହେ ।
ଅନ୍ନମାଦ୍ଧ ନିଧି, ଚରଣେ ଶରଣ, ମନିମା ମନିମା ବୋଲେ ହେ ।
ସ୍ଥଲେ କୁସୁମ ବରଷ, ଚଲେ ସକୁମାର ରସାଲସି ହେ । ୧୨ ।

ଏବେ ପୂର୍ଣ୍ଣଚନ୍ଦ୍ର, ରୁଚିର ମାଧୁରୀ, ଚନ୍ଦ୍ରମୁଖୀ ସବନାରୀ ହେ
କତି ଚନ୍ଦ୍ର ଉଦେ ହେଲ, ନବେ ଗଗନ ମୃଦ ଲୁଚିଲ ହେ । ୧୩ ।
କୁସୁମ ବଞ୍ଚନ, କୁସୁମ ଗୁମର, ପୁଷ୍ପ ଶାଢୀ ପୁଷ୍ପ ମାଲ ହେ ।
ସଦନର କରେ, ଲମ୍ବା ବୃନ୍ଦା ଦେବୀ, ପଥେ ଭେଟି ସାଥେ ଗେଲ ହେ ।
ଶ୍ୟାମ ତୁଲସୀରେ ବୋଲେ. ଶୀଘ୍ରେ ନଷ୍ଟ ନକୁଞ୍ଜେ ମିଳେ ହେ । ୧୪ ।

ଭଜନ ।

ମନନ୍ଦର ବୃଷଭାନୁ କିଶୋରୀ ପଦ୍ମରେ । ଘୋଷା ।

ଗୁଚ୍ଛକୁନ୍ତଳରେ ଜୁଡ଼ା, ଶ୍ୟାମଘନ ଜିନ ଚୂଡ଼ା, ମୂଳେ କୁସୁମ ପାଖୁଡ଼ା,
ଗନ୍ଧେ ଅଳି କରେ କ୍ରୀଡ଼ା, ଅର୍ଦ୍ଧଚନ୍ଦ୍ର, ଭାଲରେ ସିନ୍ଦୂର ରେ । ୧ ।
ଅପୂର୍ବ ରଙ୍ଗ ପିନ୍ଧଣ, ଉରେ କାଞ୍ଚୁଲି ଶୋଭନ, ନାନାଦି କୁସୁମ ମାନ,
ମାଳ ଲମ୍ବିତ ଯତନ, ମାଳବାସ, ଶ୍ରେଣୀ ଯାହାର ରେ । ୨ ।
ସରୁ କଟିରେ କଙ୍କିଣୀ, କୃଷ୍ଣ ମନ ଉଦାସିନୀ, ଝୁଣ୍ଟିଆ ଝୁଣ୍ଟିଆ ବାଣୀ ।
ତାଙ୍କଦଏ ବେଳ ଜାଣି, ଶ୍ରୀପଦ୍ମରେ ରୁଣିତ ନୂପୁର ରେ । ୩ ।
ଯେଉଁ ଚରଣରେ ଶଙ୍ଖ, ଚକ୍ରଧର ଧ୍ୱଜ ଛତ୍ର, ଯବ ବଳୟ ପଦ୍ମ ।
ପୁଷ୍ପ ଊର୍ଦ୍ଧ୍ୱ ରେଖା ପଦ୍ମ, ଅର୍ଦ୍ଧଚନ୍ଦ୍ର, ଅଙ୍କୁଶେ ସୁନ୍ଦର ରେ । ୪ ।
ବାମ ପଦରେ ଏତେ ବ୍ୟକ୍ତ, ଦକ୍ଷିଣେ ଗଦା ପର୍ବତ କୁଣ୍ଡଳ ମତ୍ସ୍ୟ ବଦ୍ଧିତ ।
ସ୍ୟନ୍ଦନ ବେଦ ସହିତ, ଶକ୍ତିଅଦି, ବନଜ ଅମ୍ବର ରେ । ୫ ।
ଜଳାଙ୍କାଦି ଚିହ୍ନମାନ ଶୋଭିତ ଯେଉଁ ପାଦରେ, ତାହା ଭାବେଣି ଯେହୁଁ ମନରେ ।
ଭଜ ନିତ ବିଶ୍ୱାସରେ, ଲଭିବୁ ତୁ ନିଶ୍ଚେ ବ୍ରଜପୁରରେ । ୬ ।
ଶ୍ରୀଗୁରୁ ଯା ଛନ୍ତି କହି, ସାଧି ଦେହେ ତାହା ଯାଚ, ଶ୍ରୀରୂପ ଗଣରେ ଯାଇଁ ।
ସେବାରେ ନିଯୁକ୍ତ ହୋଇ, ତାଙ୍କବେ ଟସ, ଠାଉଣି ଶ୍ରୀକରେ । ୭ ।
ପ୍ରେମମୟୀ ରାଧାମତ, ଭାବନ୍ତୁ ନାହିଁ ନା ଗତ, ଯହିଁ ବୃନ୍ଦା ଦଇବତୀ ।
ନିକେ ବୃନ୍ଦାବନେ ସ୍ଥିତ, ସୌଭାଗ୍ୟ କି, ହେବ ମୋହନର ରେ । ୮ ।

ଶ୍ଳୋକଃ ।

ରାଧାସ୍ୟାଂ ଦିବ୍ୟରୂପଂ, ସୁକନକ ତଡ଼ିତଂ ଚମ୍ପକଂ ସ୍ୱର୍ଣ୍ଣକାନ୍ତିଂ ।
କଂକଂ କୋକିଳନାଦଂ, ସୁମଧୁର ରୁଚିରଂ, ବାକ୍ୟ ରାଧା ନିନାଦଂ ।
ଭଂ ଭଂ ଭଙ୍କାର ନାଦଂ, ଭ୍ରମଯୁତ ଭ୍ରମରା, ମଞ୍ଜୁ ମଞ୍ଜୁଳ ପାଦଂ ।
ଝଂ ଝଂ ଝଙ୍କାର ନାଦଂ, ଠଣରଣ ଚରଣଂ, ଯାତୁ ରାଧା ନିକୁଞ୍ଜେ ।

ଯଥାରାଗ ।

ରାଧି ଦିବ୍ୟ ରୂପ, କନକ ତଡ଼ିତ, ପ୍ରଫୁଲ୍ଲ ଚମ୍ପକ କାନ୍ତି ଗୋ ।

ସମସ୍ତ କୋକିଳ, କୁହରେ ମଧୁର, ବଚନ ଅଛନ୍ତି କହି ଗୋ ।
ଝଂ ଝଂ ଝଙ୍କାର ନାଦରେ, ପଦ୍ମଗନ୍ଧେ ପାଦେ ଭୃଙ୍ଗ ଫେରେ ଗୋ । ୧ ।
ମଞ୍ଜିର ଯୁଗଲ, ବାଜଇ ମଞ୍ଜୁଳ, ରୁନୁଝୁନୁ ରୁନୁଝୁନୁ ଗୋ ।
ଝମକ ଝୁଣ୍ଟିଆ, କିଙ୍କିଣୀ ଚମକ, ନିକୁଞ୍ଜେ ମନ୍ଦ ଗମନୁ ଗୋ ।
ଝଁ ଝଁ ଝଙ୍କାର ପ୍ରପଦେ, ମୃଦୁ ହସି ଠଣ ରତ୍ନନାଦେ ଗୋ । ୨ ।

ଶ୍ଳୋକଃ ।

କନକ ମୁକୁର କାନ୍ତି ନୀଳବାସୋଽପିଧାନୀ ।
କରଧୃତବର ବଂଶୀ କିଙ୍କିଣୀବଦ୍ଧଜଙ୍ଘା ।
ଅତି ପୁଲକିତ ଗାତ୍ରୀ, ଗନ୍ତୁକାମା ନିକୁଞ୍ଜେ ।
ଜୟତୁ ଯୁବତୀବୃନ୍ଦେ ରାଧିକା ଚନ୍ଦ୍ରବକ୍ତ୍ରା ।

ଯଥାରାଗ ।

କନକମୁକୁର, କାନ୍ତିମନୋହର, ନବରନ୍ତୁ ବଂଶୀ କରେ ଗୋ ।
ଜଘନେ କିଙ୍କିଣୀ ବାଜେ କନ କନି, ପୁଲକିତ ଗମନରେ ଗୋ ।
ଭାନୁ ନୃପତି କୁମାରୀ, କୁଞ୍ଜବନେ ହୁଏ ଅଭିସାରୀ ଗୋ । ୧ ।
ଜୟ ଜୟ ରାଧେ, ଇଦୃ ଗାନ୍ଧର୍ବିକେ, ଯୁବତୀବୃନ୍ଦେର ଚନ୍ଦ୍ର ଗୋ ।
ବଚଣ ବଗୁନ, କଲ୍ପରେ ନିପୁନ, ବଶେ ରସବତୀ ଇନ୍ଦ୍ର ଗୋ ।
ସେଇ ଉତ୍ସବେ ସତ୍ୱର, ଶିରୀଚନ୍ଦନ ବାସନ୍ତ ହର ଗୋ । ୨ ।

ଶ୍ଳୋକଃ ।

କୁଚକଲଶଭରାଢ୍ୟା, କେଶରୀ କ୍ଷୀଣମଧ୍ୟା,
ବିପୁଲତର ନିତମ୍ବା, ପକ୍ୱବିମ୍ବାଧରୋଷ୍ଠି ।
ପ୍ରଣୟ ନବବୟସ୍ୟା, ସ୍କନ୍ଧବିନ୍ୟସ୍ତହସ୍ତା,
ନିଧୁବନ ରସ ପୁଞ୍ଜେ, ଯାତୁ ରାଧା ନିକୁଞ୍ଜେ ।

ଦୀର୍ଘଛନ୍ଦ ।

କୁଚକଲଶ ଭରାଢ୍ୟା, କେଶରୀର କ୍ଷୀଣ ମଧ୍ୟା, ବିପୁଳ ନିତମ୍ବ ବିମ୍ବଓଷ୍ଠୀ ।
ପ୍ରଣୟ ନବବୟସୀ, କନ୍ଧରେ ହସ୍ତ ନିବେଶି, ଦୃଷ୍ଟିପଥେ ନୀଳୋତ୍ପଳ ବୃଷ୍ଟି ଗୋ ।
ରାଧେ, ନିଧୁବନ ରସ ପୁଞ୍ଜକୁଞ୍ଜେ, ଚଳନ୍ତେ ଗୃହେର ଗର୍ବ ଗଞ୍ଜେ ଗୋ । ୧ ।

ଶ୍ଳୋକଃ ।

ରମଣ ରଭସ ଖେଳା; ରମ୍ୟ ସମ୍ଭାବ୍ୟ ଲୀଳା,
ରତି ରଭସ ଗଭୀର, ଭାବ ନାରୀ ସୁଧୀର ।
ନିକଟବିଷୟବର୍ତ୍ତୀ, ଭୁତକାନ୍ତ ପ୍ରସାଦୀ,

ନବପଣ୍ଡବରପ୍ରଭୀ ଯାନ୍ତି ରାଧା ନିକୁଞ୍ଜେ ।

ଦୀର୍ଘଛନ୍ଦ ।

ରମନ ରଭସ ଖେଳ, ରମ୍ଭସମ୍ଭାବନେ ଅଳ, ରତିରସ ଗମ୍ଭୀର କିଶୋରୀ । ଅଭୀର ନାରୀ ସୁଧିର, ନିକଟ ବିପଟେ ଧୀର, କାନ୍ତେର ପ୍ରସଙ୍ଗେ ଚମତ୍କାରୀ ଗୋ । ଶ୍ରୀରାଧେ, ନବପଲ୍ଲବସମ୍ଭ୍ରମ ଜୁମାରୀ, ନିକୁଞ୍ଜେ ଗମନ ସୁକୁମାରୀ ଗୋ । ୧ ।

ଶ୍ଳୋକଃ ।

ଶ୍ରୀମତ୍‌ପ୍ରେମବିନୋଦନୀ ମଧୁରମାଧାରାଧରେ ସ୍ୱୈରିଣୀ ।
ଗୌରୀ ପ୍ରେମମୟୀ ଶୁଭ୍ରା ଚ ସୁଭଗା ପ୍ରେମାବ୍ଧି ସନ୍ଦର୍ଭିଣୀ
ଗଣ୍ଡେ ମଣ୍ଡିତ କୁଣ୍ଡଳେ କଟିତଟେ ଧୌତେମୁଦେ କିଙ୍କିଣୀ
ନୀଳକାଞ୍ଚନଦେହିନୀ ବିଜୟତେ, ବୃନ୍ଦାବନସ୍ଥାୟିନୀ ।

ଦୀର୍ଘଛନ୍ଦ ।

ଶ୍ରୀମତୀ ପ୍ରେମବିନୋଦୀ, ମଧୁର ମାଧ ର ନଦୀ, ଜରଙ୍ଗ ଗଉରୀ ପ୍ରେମମୟୀ । ଶୁଭେ ସୁଭଗ ସୁଶୋଭି, ପ୍ରେମେ ସମୁଦ୍ର ସନ୍ଦର୍ଭି, ଗଣ୍ଡରେ କୁଣ୍ଡଳ ଝଲକାଇ ଗୋ ଶ୍ରୀରାଧେ, କଟିତଟେ କିଙ୍କିଣୀ ଶୋଭନୀ, ନବ ବୃନ୍ଦା ବିପିନ ସ୍ଥାୟିନୀ ଗୋ । ୧ ।

ଭୂଷା ।

ଶ୍ରୀମତୀ ପ୍ରେମବିନୋଦ ଧନି, ମଧୁର ମାଧୁରୀ ତରଙ୍ଗିଣୀ । ୧ ।
ଗଉରୀ ପ୍ରେମମୟି ଗୋ ରାଧେ, କୋଟିଏ ଚନ୍ଦ୍ରମୁଖକୁ ନିନ୍ଦେ । ୨ ।
ପ୍ରେମର ସମୁଦ୍ର ସନ୍ଦର୍ଭିନି, ଗଣ୍ଡେ କୁଣ୍ଡଳ ଝଲକେ ପୁନି । । ୩ ।
କଟିରେ କିଙ୍କିଣୀ ସୁଶୋଭନୀ, ନବବୃନ୍ଦା ବିପିନ ସ୍ଥାୟିନୀ । ୪ ।

ଶ୍ଳୋକଃ ।

ଶୁଦ୍ଧସ୍ୱର୍ଣ୍ଣ ବିଡ଼ମ୍ବିନୀ ପରିଲସତ ଲବଣ୍ୟ ସମ୍ମୋହିନୀ
ନାନାରଙ୍ଗ ବିଳାସିନୀ ମଧୁରିମା ଧାରାଧରେ ସେବିନୀ ।
କୃଷ୍ଣ ପ୍ରେମ ତରଙ୍ଗିଣୀ ନିରବଧି ପ୍ରେମାମୃତ ପାୟିନୀ ।
ଶ୍ୟାମ ପ୍ରେମ ବିନୋଦନୀ ବିଜୟତେ ରାଧାସୁଧାବର୍ଷିନୀ ।

ଦୀର୍ଘଛନ୍ଦ ।

ଶୁଦ୍ଧ ସ୍ୱର୍ଣ୍ଣ ଜିତ ଦେହ, ଉଲ୍ଲାସ ଲବଣ୍ୟମୋହ, ଯନ୍ତ୍ରେ ନାନା ବିଳାସିନୀ । ମାଧୁର୍ଯ୍ୟନଦୀ ସେବିନୀ, କୃଷ୍ଣ ପ୍ରେମ ତରଙ୍ଗିନୀ, ସଦା ପ୍ରେମାମୃତ ଅପ୍ୟାୟିନୀ ଗୋ । ଶ୍ରୀରାଧେ, ଘନଶ୍ୟାମ ପ୍ରେମ ବିନୋଦନୀ, କୁଞ୍ଜେବ୍ରଜେ ପିୟୂଷବର୍ଷିନୀ ଗୋ ।୧।

ଭୂଷା ।

ଶୁଦ୍ଧ ସ୍ୱର୍ଣ୍ଣ ବିଡ଼ମ୍ବିତ ଦେହ ଲବଣ୍ୟ ଉଲ୍ଲାସ ମନ ମୋହ । ୧ ।

ନାନାରଙ୍ଗ ବିଳାସ ମାଧୁରୀ, ଧରାଧରେ ଶୋଭା ଶ୍ରୀ କିଶୋରୀ । ୨ ।
ସଦା ପ୍ରେମାମୃତ ଆପ୍ୟାୟିନୀ, ଘନଶ୍ୟାମ ପ୍ରେମ ଉନ୍ମୋଦିନୀ । ୩ ।
କୁଞ୍ଜେ ବଟକ ପିପୁଷ୍ପଭୂଷିଣୀ, ଶ୍ରୀକୃଷ୍ଣ ମନକୁ ସେ ମୋହିନୀ । ୪ ।

ଶ୍ଳୋକଃ ।

ରାଧେୟଂ ନବଯୌବନୀୟ ବୟସୋଲ୍ଲାସେନ ସନ୍ତୋଷିତା ।
ସୁସ୍ମେରାଧରଚନ୍ଦ୍ରବିମ୍ବବଦନୀ ହେମାଙ୍ଗ କାନ୍ତ୍ୟୁଜ୍ଜ୍ୱଳା ।
ନିତ୍ୟାଂ କଳ୍ପତରୁସ୍ଥମୂଳେ ନିବେଶିତା ବେଶେନ ଭୂଷାମୟି ।
ନାନାଶକ୍ତି ସମନ୍ୱିତା ବିତନୁତେ ପ୍ରେମ ପ୍ରବୃତ୍ତେ ମୁହୁଃ ।

ଦୀର୍ଘଛନ୍ଦ ।

ରାଧେ ନବଯଉବନୀ ବୟସୋଲ୍ଲାସେ ତୋଷିନୀ, ସ୍ମିତାଧର ଚନ୍ଦ୍ରବିମ୍ବମୁଖୀ । ହେମାଙ୍ଗ କାନ୍ତି ଉଜ୍ଜ୍ୱଳା, ନିତ୍ୟ କଳ୍ପତରୁତଳ, ମଣ୍ଡନା ମଣ୍ଡନ ବେଶେ ସଖୀ ଗୋ । ଶ୍ରୀରାଧେ, ନାନାଶକ୍ତି ସମନ୍ୱିତା ହୟେ, ସନ୍ତତ ପ୍ରଳୟ ପ୍ରବର୍ତ୍ତିୟେ ଗୋ । ତାର ପଦ ନଖ କାନ୍ତି, କୋଟିଚନ୍ଦ୍ର ଜିନି ଜ୍ୟୋତି, ଉହକ ସୁବର୍ଣ୍ଣ ଜିନି ଆଭା । ଲକ୍ଷ୍ମୀ ଗୌରୀ ଶଚି ରତି, ଯାର ଅଂଶାଂଶ ବିଭୂତି ଶ୍ରୀଚନ୍ଦନ ତାର ପାଦେ ସେବା ହେ । ଶୁନହେ, ରସିକ ଭକତ ଜନା ଅବେ, ରାଧାଶ୍ୟାମ ପ୍ରେମତେ ଡୁବିବେ ହେ ।

ଶ୍ଳୋକଃ ।

ନାନାନୃତ୍ୟ ବିଳାସ ଗୀତ ରଭସୈ ପୂର୍ବରିତାଦିଙ୍ମୁଖଂ ।
ଗୌରୀ ଚନ୍ଦ୍ରମୁଖୀ ସରୋଜନୟନାଂ କନ୍ଦର୍ପ ସମ୍ମୋହନ୍ନ ।
ରମ୍ଭା ଗୃହ୍ମନିତମ୍ବିନୀ ରସବତୀ ପ୍ରେମାମୃତୋଦ୍‌ଗାରଣୀ ।
ରାଧା କାଞ୍ଚନଦେହିନୀ ବିଜୟତେ ବୃନ୍ଦାବନସ୍ଥାୟିନୀ ।

ଗୀତ ।

କୁଞ୍ଜେ ଗମନ ଗୋ ମତ୍ତ କୁଞ୍ଜରଗାମିନୀ, ବାଜେ କିନି କିନି କିନି ଜଘନେ କିଙ୍କିଣୀ ଗୋ । ଘୋଷା । ତୁଙ୍ଗବିଦ୍ୟା ଡମ୍ଫ ବାଜେ ଚମକି ବାଜାଏ, ରଙ୍ଗେ ନାଚେ ରଙ୍ଗଦେବୀ ସୁଦେବିକା ଗାଏ । ୧ । ନାନା ନୃତ୍ୟ ଗୀତରସ ବିଳାସ ପ୍ରକଟେ, ବନ ଘନ ଦଶ ଦିଗାନ୍ତର ପୂରି ଉଠେ । ୨ । ଗୌରୀ ଚନ୍ଦ୍ରମୁଖୀ ସରୋଜ ନୟନୀ, କନ୍ଦର୍ପ ମୋହିନୀ ରମ୍ଭା ଗୃହ୍ମ ନିତମ୍ବିନୀ । ୩ । ରାଧେ ରସବତୀ ପ୍ରେମାମୃତ ଉଦ୍‌ଗାରିଣୀ, ଜିନେ ହେମ ଗୌରୀ ବୃନ୍ଦାବିପିନ ଶାୟିନୀ । ୪ । ବୋଲେ ଶ୍ରୀଚନ୍ଦନ ପ୍ରେମ ତରଙ୍ଗ ପ୍ରକାଶ, ଧ୍ୟାନେ ଜାଣି କରିଲେ ସେ ନାଚେ ବୃନ୍ଦାବାସ । ୫ ।

ଯା ଶ୍ରୀ ସତ୍ୟବତୀ ସ୍ୱୟଂ ରସବତୀ ପ୍ରେମାନୁସମ୍ପାଦନୀ ।
ଯା ନିତ୍ୟଂ ମଧୁ ଭାଷିଣୀ ସୁଖମୟୀ ସନ୍ତୋଷରତ୍ନାକରୀ ।
ସା ରାଧା ସୁଧୟା ସଧା ରସମୟୀ କୃଷ୍ଣପ୍ରିୟା କୁଞ୍ଜଗା ।
ସନ୍ତୁଷ୍ଟା କ୍ଷିତିମଣ୍ଡଳେ ବିଜୟତେ ବୃନ୍ଦାବନବାସିନୀ ।

ଦୀର୍ଘଛନ୍ଦ ।

ଯେ ଶ୍ରୀମତୀ ସତ୍ୟବତୀ, ସ୍ୱୟଂ ରସବତୀ ପ୍ରେମୋଲ୍ଲାସି ନିତ୍ୟ ମଧୁଭାଷି ସନ୍ତୋଷ ରତ୍ନାକରନୀ, ସୁଧାରସମୟୀ ଧନୀ, ସ୍ତୁତି ସତ୍ୟସୁବୃଦ୍ଧି ସୁକେଶି ଗୋ । ଶ୍ରୀରାଧେ, ଜୟକୃଷ୍ଣ କୁଞ୍ଜଗ ସନ୍ତୁଷ୍ଟା, ବିଜେ କ୍ଷିତିମଣ୍ଡଳ ପ୍ରତିଷ୍ଠା, ବୃନ୍ଦାବନବାସି ସଂଗତିଷ୍ଠା ।

ଉହା ।

ସ୍ୱୟଂ ରସବତୀମୟୁ ରାଧେ, ଉନବଂଶ ଛନ୍ଦ ଶୋଭ ପାଦେ । ୧ ।
ପ୍ରେମୋଲ୍ଲାସୀ ମଧୁର ଭାଷିଣୀ, ସନ୍ତୋଷ ତୋଷ ରତ୍ନାକରଣୀ । ୨ ।
ଜୟ କୃଷ୍ଣ କୁଞ୍ଜଗ ସନ୍ତୁଷ୍ଟା, ବିଜେ କ୍ଷିତି ମଣ୍ଡଳ ପ୍ରତିଷ୍ଠା । ୩ ।

ଶ୍ଳୋକ ।

ବକ୍ତ୍ରେ ଚନ୍ଦ୍ର ବିଳାସିନୀ ନୟନୟୋଃ ପ୍ରେମକୃପାପାଙ୍ଗିନୀ ।
ବିମ୍ବୋଷ୍ଠୀ ବରଚନ୍ଦ୍ରକାନ୍ତ ବିଲସ ନ୍ମୁକ୍ତାବଳୀ ଚନ୍ଦ୍ରିକା ।
ଦୁର୍ଦଣ୍ଡାଙ୍ଘ୍ରିଂ ସମୁଲ୍ଲାସୋପୂଲକିନ ସନ୍ନ୍ୟାସ ବିନ୍ୟାସିନ ।
ରାଧା କାନ୍ତିମଦେହନୀ ବିଜୟତେ କାରୁଣ୍ୟ କଲ୍ଲୋଳିନୀ ।

ଦୀର୍ଘଛନ୍ଦ ।

ମୁଖେ ଚନ୍ଦ୍ର ବିଳାସିନୀ, ନେତ୍ରେ ପ୍ରେମ ସମ୍ପାଦନ, କୃପାପାଙ୍ଗି ସ୍ମିତ ବିମ୍ବାଧରା । ଚନ୍ଦ୍ରକାନ୍ତ ବିଲସନ୍ତା, ମୁକ୍ତାବଳି ସୁଚନ୍ଦ୍ରିକା, ବରାଙ୍ଗି ଉଲ୍ଲାସ ସୁନର୍ତ୍ତିରା ଗୋ । ଶ୍ରୀରାଧେ କାରୁଣ୍ୟ ଜଳଧି ପୁଲକିନ, ସଖୀ କନ୍ଧେ ହସ୍ତ ବିନ୍ୟାସିନ ଗୋ । ୧ ।

ଉହା ।

କୃପାଙ୍ଗେ ବିମ୍ବାଧରା ସ୍ମିତା, କୋଟି ଚନ୍ଦ୍ରକାନ୍ତ ବିଲସନ୍ତା । ୧ ।
ମୁକ୍ତାବଳି ସୁଚନ୍ଦ୍ରିକା ରାଧେ, ବରାଙ୍ଗି ଉଲ୍ଲାସ ସୁସନର୍ତ୍ତିଭେ । ୨ ।
କାରୁଣ୍ୟ ଜଳଧି ପୁଲକିନ, ସଖିକନ୍ଧେ ହସ୍ତବିନ୍ୟାସିନ ଗୋ । ୩ ।

ଶ୍ଳୋକ ।

ପ୍ରେମୋଦ୍‌ଗାର୍ କୃତେକ୍ଷଣୋ ମିଳହତୀ ଶ୍ରୀସତ୍ୟ ନିତ୍ୟେଶ୍ୱରୀ ।

ନାନା ଭାବ ବିଳାସମାନ ମଧୁର ମୋରାନ୍ତ କାନ୍ତାନସ୍ୟ ।
ପ୍ରାଦ୍ୟ ପ୍ରୋଦ୍ଭ୍ରମେ ସାତକ୍ରୁମ୍ଭ ଲତଚା ଦେହ ମନୋହାରଣୀ ।
ଶ୍ରୀମନ୍ନାଗର ଗ୍ରସରନ୍ତି ଜଳଧି ଶ୍ରୀ ରାଧିକାମାଶ୍ରୟେ ।

ଦୀର୍ଘଛନ୍ଦ ।

ନବ ନବ ପ୍ରେମୋଦ୍‌ଗାସ୍ତ୍ର, ଚଳନ ତରଙ୍ଗ ଲହସ୍ତ୍ର, ଶ୍ରୀମତୀ ଶ୍ରୀସତ୍ୟ ନିତ୍ୟୋଣସ୍ତ୍ର । ନାନାଭାବ ବିଳାସିନୀ, ମନ୍ଦ ମଧୁର ଭାଷିନୀ ସ୍ମିତ ଯୁତ ପଦ୍ମମୁଖ ଗୌର୍ସ୍ତ୍ର ଗୋ । ଶ୍ରୀରାଧେ ଦୂତବନ୍ତ କୁନ୍ଦନ ବର୍ଣ୍ଣସ୍ତ୍ର, ଶ୍ରୀନାଗରରାସ ବନ୍ଧୀକସ୍ତ୍ର ଗୋ । ୧ ।

ଶ୍ଳୋକଃ ।

ସ୍ୱୟଂ ବରାଜ ପରନାଟ୍ୟ ଛନ୍ଦଂ ବରାଜ ରାଧା ବନନ୍ଦନ ସୁଧାମଧୁରିତି ବଚୈଭଃ
ପ୍ରେମରସେନ ଗୁରୁଣା ନବରନ୍ତିବେଣୀ ଯତ୍ତଙ୍କିଣୀ କଷ୍ଟିତନେ ନିନାଦଂ କରୋତି

ଦୀର୍ଘଛନ୍ଦ ।

ସ୍ୱୟଂ ରାଧେ ଦବ୍ୟକାନ୍ତ ନିତ୍ୟ ନବଦାଲ ଭ୍ରାନ୍ତି ନନ୍ଦିତବଚନେ ସୁଧା ସ୍ୱାଦୁ । ପ୍ରେମରସେ ଗୁରୁତର, ନବରନ୍ତି ବଂଶୀଧର, ଅଙ୍ଗଛଟା କତକୋଟି ଇନ୍ଦୁ ଗୋ । ଶ୍ରୀରାଧେ ଯେ ରସନା କଷ୍ଟିତଟେ ସ୍ଥିତ, କୁନଶୋଭା ନାଦରେ ଉଦିତ ଗୋ । ୧ ।

ଓଡ଼ିଆ ।

ସ୍ୱୟଂ ତନୁ ରାଧେ ଦବ୍ୟକାନ୍ତ । ଜମ୍ବୁ ନଦ ଜିନି ବଂଚକନ୍ତ । ୧ ।
ନନ୍ଦିତ ବଚନେ ସୁଧା ସ୍ୱାଦୁ । କୋଟି ଚନ୍ଦ୍ର ଜିନି ମୁଖ ଇନ୍ଦୁ । ୨ ।
ପ୍ରେମରସେ ଅତି ଗୁରୁତର । ନବରନ୍ତି ବଂଶୀ ଅଛେ ଧର । ୩ ।
ଅଙ୍ଗ ଛଟା କେ କହିତେ ପାରେ । କତ ଶୋଭାକୁ ଉଦିତ କରେ ।

ଶ୍ଳୋକଃ ।

ନବୀନ ଶ୍ରୀରାଧା ନବରୁଚିର ପୂର୍ଣ୍ଣେନ୍ଦୁ ବଦନା,
ନବୀନ ପ୍ରେମାଢ଼୍ୟା ନବ ନବ ସଖିଭିଃ ପରବୃତ୍ତଂ
ନବବୃନ୍ଦାରଣ୍ୟେ ନବକୁଞ୍ଜାଳୟେ ନୂତନ ତନୁ,
ନବୀନଃ କ୍ରୀଡ଼ାର୍ଥଃ ବ୍ରଜତି ନବରଙ୍ଗି ମଧୁବନଂ ।

ଦୀର୍ଘଛନ୍ଦ ।

ନବୀନ ଶ୍ରୀରାଧାଶ୍ୟାମ, ନବରୁଚି ପୂର୍ଣ୍ଣକାମ, ଅକଳଙ୍କ ଚନ୍ଦ୍ରମାବଦନୀ । ନବୀନ ପ୍ରେମ ତରଙ୍ଗୀ, ନବ ନବ ପ୍ରେମ ସଙ୍ଗୀ, ନବବୃନ୍ଦାବପୀନମଣ୍ଡନୀ ଗୋ । ଶ୍ରୀରାଧେ ନବ କୁଞ୍ଜାଳୟେ ଅଲଙ୍କୃତ, ନବଭାଷ ରସ ସ୍ୱାର୍ଥ କୃତ ଗୋ । ନବ ନବ୍ୟ ଭାବେ ତୃପ୍ତ, ନବରତି ରନ୍ତି ପ୍ରାପ୍ତି, ବାଞ୍ଛିତରେ ନିକୁଞ୍ଜେ ଗମିତ ଗୋ ।

ଶ୍ଳୋକଃ ।

ଗୌରୀ ପ୍ରେମମୁଖୀ କୁରଙ୍ଗୀନୟନୀ କିଶୋରବୟ ବତ୍ସଳା ।
ସଙ୍ଗୀତାଗମବେଦତା ସୁଖମୟୀ ତୁଙ୍ଗସ୍ତନା କାମିନୀ ।
ଶ୍ୟାମ ପ୍ରେମ ବିନୋଦନୀ ମଧୁରିମା ଧାରାଟେରେ ସ୍ୱୈରଣୀ ।
ତ୍ରୈଲୋକ୍ୟୈକ ନିତମ୍ବିନୀ ବ୍ରଜପୁରେ ରାଧା ସୁଧା ଦେହିନୀ ।

ଦୀର୍ଘଛନ୍ଦ ।

ଗୋରୀ ପଦ୍ମମୁଖୀ ରାଧା, କୁରଙ୍ଗିନୟନା ସ୍ନିଗ୍ଧା, କ୍ଷୀଣୋଦରୀ ପ୍ରନୟ ବତ୍ସଳ ।
ସଙ୍ଗୀତ ରଙ୍ଗ ପ୍ରବନା, ସୁଖମୟି ତୁଙ୍ଗସ୍ତନା, କାମିନୀ ରତନ କ୍ଷମାଶିଳ ଗୋ ।
ଶ୍ରୀରାଧେ ଘନଶ୍ୟାମ ପ୍ରେମବିନୋଦନୀ, ମଧୁରିମାନନ୍ଦୀ ବିସ୍ତାରିଣୀ ଗୋ । ତ୍ରୈଲୋକେ
ଏକ ନିତମ୍ବୀ, ବୃନ୍ଦାବନେ ପୂରନ୍ଦରୀ, ସୁଧା ଦେହ ବସୁଧାମଣ୍ଡନ ଗୋ । ୧ ।

ଶ୍ଳୋକଃ ।

ରାସୋଲ୍ଲାସ ବିଳାସନିର୍ମଳ ରସା ସମ୍ପୂର୍ଣ୍ଣ ଚନ୍ଦ୍ରାନନା ।
ଶୁଦ୍ଧ ସ୍ୱର୍ଣ୍ଣ ବିଡ଼ମ୍ବିକାନ୍ତି ବିଲସତ ଚନ୍ଦ୍ରାଳକା କୁନ୍ତଳା ।
ଲାବଣ୍ୟାମୃତ ମଞ୍ଜରୀ ରସକଳା ସନ୍ଦୋମୁହୁଃ କେଳିନୀ ।
ରାଧା ପ୍ରେମ ବିନୋଦନୀ ବ୍ରଜପୁରେ ନିତ୍ୟସ୍ଥଳ ସ୍ଥାୟିନୀ ।

ଦୀର୍ଘଛନ୍ଦ ।

ରାସ ଉଲ୍ଲାସ ବିଳାସ, ନିର୍ମଳ ରସ କୋଶ, ଶୁଦ୍ଧ ସ୍ୱର୍ଣ୍ଣ ବିଡ଼ମ୍ବ ଅଙ୍ଗିନୀ,
ସମ୍ପୂର୍ଣ୍ଣ ଚନ୍ଦ୍ରାନନା; ଚନ୍ଦ୍ରାଳକା ସ୍ନେହାଧିନା, ରସକଳା ସିନ୍ଧୁ ସୁଲୋଚନା ଗୋ ।
ଶ୍ରୀରାଧେ, ଲାବନ୍ୟ ପିୟୁଷ ସୁମାଧୁରୀ, ପ୍ରେମମୟି ନବୀନ କିଶୋରୀ ଗୋ । ୧ ।
ନିତ୍ୟ ନିତ୍ୟ ସ୍ଥଳ ସ୍ଥାୟି, ପ୍ରନୟ ବିନୋଦମୟି, ବ୍ରଜେ କୁଞ୍ଜେ ନିକୁଞ୍ଜ ଈଶ୍ୱରୀ ।
ରମ୍ୟମୟି ପ୍ରେମ ଧନୀ, ଶ୍ରୀକୃଷ୍ଣ ମନମୋହିନୀ, କର କୃପାରସ ଅହ୍ଲାଦନୀ ଗୋ ।
ଶ୍ରୀରାଧେ, ଲାବଣ୍ୟ ପୀୟୂଷ ସୁମାଧୁରୀ, ପ୍ରେମମୟି ନବୀନ କିଶୋରୀ ଗୋ । ୨ ।

ଶ୍ଳୋକଃ ।

ଉତ୍ତୁଙ୍ଗସ୍ତନଭାର ଉନ୍ନତ ତନୁ ବିଦ୍ୟୁଚ୍ଛଟାର୍କଛବି ।
ଶ୍ରେଣୀ ନୀଳ ଦୁକୂଳିନୀ ମୃଦୁପଦାମ୍ଭୋଜେ ସ୍ଫୁରନ୍ନୂପୁରା ।
ସୁସ୍ମିରାଧର ଚନ୍ଦ୍ରବିମ୍ବବଦନୀ କନ୍ଦର୍ପ ଦର୍ପାଙ୍କୁରା ।
ପ୍ରେମାନ୍ଧା ମଦ ମନ୍ଥରା ବ୍ରଜପୁରେ ପ୍ରାଣାଧିକା ରାଧିକା ।

ଦୀର୍ଘଛନ୍ଦ ।

ଉତ୍ତୁଙ୍ଗ ଉରଜଭାର, ଉନ୍ନତ ତନୁ ପ୍ରବଳ, ବିଦ୍ୟୁଚ୍ଛଟା କୋଟି ଅର୍କଛବି ।
କଟିନୀଳଦୁକୂଳିକ, ମଧୁ ପଦାମ୍ଭୋଜ ଧ୍ୱନି, ଶବ୍ଦିତ ନୂପୁରେ ବଢ଼ୁଥିବନ୍ତି ଗୋ ।

ଶ୍ରୀରାଧେ, ସସ୍ମିତଅଧରଚନ୍ଦ୍ରମୁଖୀ, କନ୍ଦର୍ପଦର୍ପ ଅଙ୍କୁଶ, ପ୍ରେମାନନ୍ଦମନ୍ତ୍ରଣ, ବ୍ରଜେ ପ୍ରାଣାଧିକ ଜନ ସୁଖି ଗୋ । ୧ ।

ଶ୍ଲୋକ ।

ଉନ୍ମିଳନ୍ନବଯୌବନାମୃଦୁତରା ପ୍ରଫୁଲ୍ଲିତାଲଙ୍କୃତା ।
ସୁଶ୍ରେଣୀ ଉର ଉଙ୍ଗୁରା ପରାସ୍ମେରାଧରା ମେଦୁରା ।
ନୀଲବକ୍ତ୍ରପୂର୍ଣ୍ଣିତା ପ୍ରିୟସଖି ସ୍ନେହେଷ୍ଟୁରପ୍ରାଣିକା ।
ଶ୍ୟାମ ପ୍ରେମ ବିନୋଦନୀ ବ୍ରଜସୁତେ ପ୍ରାଣାଧିକା ରାଧିକା ।

ଦୀର୍ଘଛନ୍ଦ ।

ଉନ୍ମିଲ ନବଯୌବନା, ମୃଦୁତରା ଉରାଙ୍ଗନା, ପ୍ରଫୁଲ୍ଲିତା ଅଳଂକୃତ ମଯ୍ୟି । ସୁଶ୍ରେଣୀ ଉରଉଙ୍ଗୁରା, ମୃଦୁପରା ସ୍ମିତାଧରା, ଅନ୍ତରେ ଶୃଙ୍ଗାର ରସ ସ୍ଥାୟି ଗୋ । ରଙ୍ଗିନୀ, ନୀଳାଦ୍ଭୁତ ପୂର୍ଣ୍ଣିତା ରସିକା, ଶ୍ୟାମପ୍ରେମ ବିନୋଦନୀ, ପ୍ରାନସଖି ଉନ୍ମୋଚନ, ବ୍ରଜେ ପ୍ରାନାଧିକା ଶ୍ରୀରାଧିକା ଗୋ । ୧ ।

ଶ୍ଲୋକଃ ।

ବୃନ୍ଦାବନାନ୍ତର ଚରସ୍ମର ପୁଷ୍ପ ପୁଞ୍ଜ:
ସଂଭନ୍ନବନ୍ତୀ ମଦନ ମୁଦ୍ରିତ ଦୀର୍ଘନେତ୍ରୀ ।
କର୍ଣ୍ଣେ ରସାଳ ମୁକୁଳଃ, ସ୍ତବକଂ ବହନ୍ତି,
ଶ୍ୟାମାଙ୍ଗ ସଙ୍ଗ ବରତ ସ୍ଫୁରତେତି ରାଧା ।

ଦୀର୍ଘଛନ୍ଦ ।

ବୃନ୍ଦାବନାନ୍ତ ସଞ୍ଚାର, ଶିରେ ପୁଷ୍ପ ମୁଚ୍ଛୁଧାରୀ, ମଦନ ମୁଦ୍ରିତ ଦୀର୍ଘନେତ୍ରୀ । କର୍ଣ୍ଣେ ରସାଳ ମୁକୁଳ, ସ୍ତବକ ଶୋଭ ସଙ୍କୁଳ, ଶ୍ୟାମାଙ୍ଗ ସସ୍ମିତ ଫୁଲ ପତ୍ର ସେ । ରଙ୍ଗିନୀ, ଉଦୟ ଉଦୟ ପୂର୍ଣ୍ଣକାମେ, ବ୍ରଜେ ରାଧା ନିକୁଞ୍ଜ କୁଞ୍ଜରେ ସେ ।

ଶ୍ଲୋକଃ ।

ସେବେବସୁ ମହାଭ୍ରାନ୍ତି କାଞ୍ଚନ ରୁଚି, ତ୍ରୈଲୋକ୍ୟ ସମ୍ମୋହନୀ ।
ନିତ୍ୟାଦ୍ଭୁତସୁନ୍ଦରା ଜିତସୁଧା ବାକ୍ୟାମୃତା ରାଧିକା ।
ଈଷଦ୍ଧାସ ମୁଖୀ କୁରଙ୍ଗନୟନୀ ଗୌରୀ ସୁଧାଧାରିଣୀ ।
ପ୍ରେମାନନ୍ଦବିଲାସିନୀ ବିଜସୁତେ ପ୍ରେମ ଗ୍ରଦ୍ଗଦାମୃତଃ ।

ଦୀର୍ଘଛନ୍ଦ ।

ତେଜ କାଞ୍ଚନ ବରନ, ତ୍ରିଭୁବନ ସାନନ୍ଦନୀ, ଅଦ୍ଭୁତ ସୌନ୍ଦର୍ଯ୍ୟ ଶ୍ରୀସୁନ୍ଦରୀ । ବାକ୍ୟାମୃତ ଜିତେ ଯତ; ସୁଧାରସ ପ୍ରେମାମୃତ, କୁରଙ୍ଗି ନୟନ କୃଶୋଦରୀ ସେ । ଶ୍ରୀରାଧେ, ଗୌରବପ୍ରେମ ପୀୟୂଷ ସାଗରନ, ପ୍ରେମାନନ୍ଦରଙ୍ଗ

ବଳାସିନୀ ଗୋ । ୧ । ଦୁହୁ ରସରାଜ ହେବ, କନ୍ଦର୍ପ ରଥ ବଗୁର, କ୍ରୀଡ଼ା କଲଟେ ଶୋଭାବନ । ଚପଲ ନାଗମ୍ବ ଚକ୍ର, ଚଳନେ ଗତି ଅବଙ୍କ ପତାକା ଅଞ୍ଚଳ କମ୍ପମାନ ସେ । ମଞ୍ଜୁଲ, ନୂପୁର କନକ ଘୋଷ ଶ୍ରୁତି, ବଳେ ମହାଦ୍ଭୂତ ଶ୍ରମଗା ସେ । ୨ । ପୁନଃ ପୁନଃ ଅଧ୍ୟନ, କୈଲ ଏଇ ଅନୁମାନ, ଲାବଣ୍ୟ ସମୁଦ୍ର ଘୋଷି ଅସେ । ହାସ ତରଙ୍ଗ ଚଞ୍ଚଳ, ବାସ କାଳିମା କୁଟିଳ, ଅଛେ ସ୍ତନ ଚକ୍ର-ବାକ ପାଶେ ସେ । ସେକାଲେ, ଗର୍ଜନ ନୂପୁର ନାଦ ଭେଲ, ଶ୍ୟାମ ଟୈର୍ଯ୍ୟ ନକ ଡୁବାଓଲ ସେ । ହେରସୂ ।, ବହ୍ଲଲ କାଯେ, ଶ୍ରୀରାସଈଶ୍ୱରୀ ବଜେ, ଶ୍ରୀଚନ୍ଦନ ନିବେଦନ କୈଲ ସେ । ୩ ।

ଡୁହା ।

ଲବଣ୍ୟ ବାରଧି ଧନ କ୍ଳଜେ, ହେରସୁଁ । ଅଥସୁ ରସରାଜେ । ୧ ।
ନେନେ ଅନନ୍ଦାଶ୍ରୁ ଭରାଓଲ, ସକଳି ବିବେକ ହରାଓଲ ।
ମଞ୍ଚିତେ ଚଞ୍ଚଳ ନେନ୍ନ ମୀନ, ମୃଦୁଲ କମ୍ପନ ଅପଧନ । ୩ ।

ଦୀର୍ଘଛନ୍ଦ ।

ବଦନ ଗୃନ୍ଦ ଜଦସୁ, ମଦନ ସୃଷ୍ଟି ପ୍ରଳସୁ, ସଦନ ଅନ୍ଧାର ଦଳ ହରି । ସ୍ୱୟଂ ମଦନମୋହନ, ଟେଜି ନିକୁଞ୍ଜ ସଦନ, ଅପୂର୍ବ ମୋହନ ବଂଶୀଧାରି । ସମ୍ଭ୍ରମେ, ହେରସୁଁ । ନାଗରି ପୁରନ୍ଦରି, ବ୍ରଜେକେଲି ନାଗରେନ୍ଦ୍ର ହରି ସେ । ୧ ।

ଡୁହା ।

ବଦନ ଗୃନ୍ଦଜଦସୁ ଦେଖିଲ, ମଦନ ସୃଷ୍ଟି ପ୍ରଳସୁ କୈଲ । ୧ ।
ସ୍ୱୟଂ ମଦନ ମୋହନ ହରି, ନିକୁଞ୍ଜ ସଦନ ତେଜ୍ୟାକରି । ୨ ।
ଅପୂର୍ବକରେ ମୋହନ ବେନୁ, ହେରିସୁଁ । ବନେ ନାଗରେ କାହ୍ନୁ । ୩ ।

ଶ୍ଳୋକଃ ।

ବୃନ୍ଦାରଣ୍ୟେ ନବ ନବ ଲତା ମନ୍ଦିରେ ଦ୍ୱାରିରାଧା ।
ଦୃଷ୍ଟ୍ୱା ଦୃଷ୍ଟ୍ୱା ମଧୁର ମୁରଲୀ ବାଦୟନ୍ ମନ୍ଦ ମନ୍ଦଂ ।
ଉତ୍ଫୁଲ୍ଲେନ୍ଦିବରଦଳ ରୁଚ କୋଟିକନ୍ଦର୍ପାନିଳୋ ।
ଯସ୍ୟାଙ୍କୋପି ବ୍ରଜପୁର ବଧୂ ଚିତ୍ତଚୌର କିଶୋର ।

ଦୀର୍ଘଛାନ୍ଦ ।

ନବବୃନ୍ଦାବନ କୁଞ୍ଜ, ନବ ନବ ଲତା ପୁଞ୍ଜ, ଦ୍ୱାରେବରେ ନବୀନକିଶୋରୀ ହୃଷ୍ଟହେଲ ଦୃଷ୍ଟିଭରି, ମଧୁର ମୁରଲୀଧାରି, ବାଦନ୍‌କୈଲ ମନ୍ଦ ମନ୍ଦକରି ସେ । ମୋହନ, ଉତ୍ଫୁଲେନ୍ଦବରଦଳ ରୁଚ, ନବୀନ ତମାଳଦଳ ଭ୍ରାନ୍ତ ସେ । କୋଟିଏ କନ୍ଦର୍ପ ମାଳ, ଯତ ପୁର ବ୍ରଜବାଳ, ଚିତ୍ତଚୌର କିଶୋର ମୂର୍ତ୍ତି ସେ । ୧ ।

ଓ ହା ।

ନବ ନବ ବୃନ୍ଦାବନ କୁଞ୍ଜ, ଅତ୍ୟନ୍ତ ସେହୁ ରହସ୍ୟ ପୁଞ୍ଜ । ୧ ।
ଦ୍ୱାରେ ଶୋଭେ ନବୀନ କିଶୋରୀ, ଅଭ୍ୟନ୍ତରେ ହୃଷ୍ଟେ ଦୃଷ୍ଟି ଭରି । ୨ ।
ମଧୁର ମୁରଲୀ କରେ ଧରି, ବଜାଏ ସେ ମନ୍ଦ ମନ୍ଦ କରି । ୩ ।

ଶ୍ଳୋକଃ ।

ମେଘଶ୍ୟାମୋ ନଳିନନୟନୋ କେକି ପୁଚ୍ଛାବତଂସୋ ।
ବଂଶୀପାଣି କନକ ବସନୋ ବୈଜୟନ୍ତ୍ୟା ନମଢ୍ୟା ।
ନାନାଭଙ୍ଗି ବିରଚିତଗତି ରାଧୟା ସହାସଂ ।
ନୀଳା ପଦ୍ମ ଭ୍ରମଣ ନିରତଃ କୋପିଜୀୟାତ୍କିଶୋର ।

ଦୀର୍ଘଛନ୍ଦ ।

ନୀଳମେଘ ଶ୍ୟାମ ବର୍ଣ୍ଣ, ପ୍ରଫୁଲ୍ଲ ପଦ୍ମନୟାନ, ମୟୂରଚନ୍ଦ୍ରିକାଚୂଳ ଶିରେ ।
ବଂଶୀଧର ପୀତାମ୍ବର, ବୈଜୟନ୍ତୀ ମାଳଧର, ନାନାଭଙ୍ଗୀବିରଚିତଭରେ ସେ ।
ମୋହନ, ରାଧାମୁଖ ହେରି ମୃଦୁହାସେ, ପଦ୍ମଗନ୍ଧେ ଭ୍ରମରଙ୍କ ବସେ ସେ । ୧ ।
ନୀଳକମଳ ଭ୍ରମନ, ରଞ୍ଜନ କରେ ସଘନ, କିଶୋର କିଶୋରୀର ଉଲ୍ଲାସ ।
ଏହିଶୋଭା ହେରିମନ, ଆନନ୍ଦ ଶ୍ରୀ ବୃନ୍ଦାବନ, ସବଜନ ହଇଲ ହରଷ ସେ ।
ମୋହନ, ରାଧାମୁଖ ହେରି ମୃଦୁ ହାସେ, ପଦ୍ମଗନ୍ଧେ ଭ୍ରମର କି ବସେ ସେ । ୨ ।

ଓହା ।

ଏହି ଶୋଭା ହେରି ମନ । ଆନନ୍ଦିତ ହେଲ ସର୍ବଜନ । ୧ ।

ଶ୍ଳୋକଃ

ହାରବଲ୍ଲି ତରଳ କାଞ୍ଚନ କାଞ୍ଚିଦାମ, ମଞ୍ଜିର କଙ୍କଣମଣି ଦ୍ୟୁତିଦୀପିତସ୍ୟ ।
ଦ୍ୱାରେ ନିକୁଞ୍ଜ ନିଳୟସ୍ୟ ହରିଂ ନିରୀକ୍ଷ, ବ୍ରୀଡ଼ାବତୀ ମଥସଖୀ ମିୟମିତ୍ୟୁବାଚଃ ।

ଦୀର୍ଘଛନ୍ଦ ।

ହାରବଲ୍ଲି ତରଳିତ, କାଞ୍ଚନ କାଞ୍ଚିଦୀପିତ, ମଞ୍ଜୀର ମଣି କଙ୍କଣଦ୍ୟୁତି ।
ନିକୁଞ୍ଜ ମନ୍ଦିର ଦ୍ୱାରେ, ବନ୍ଧୁ ହେରି ଲଜ୍ଜାଭରେ, ଉଜ୍ଜ୍ୱଳଲଜ୍ଜାବତୀ ରସଭରେ ସେ ।
ଶ୍ରୀରାଧେ, ସେ ଲଜ୍ଜା ଅଙ୍ଗ ପ୍ରକାଶନେ, କାଳିନ୍ଦୀ ଚଞ୍ଚଳ ଗମନେ ସେ । ୧ ।
ଯେମନ୍ତ ସମୟେ ହେରି, ବୃନ୍ଦା ବୃନ୍ଦାବନେଶ୍ୱରୀ. ଶିଖିଲେ କେ କହିଲ ରାଧିକେ । ମଞ୍ଜୁ କୁଞ୍ଜେ କେଲି ଶେଜେ, ବିଜେ କର ରସରାଜେ, ହୃଷିତ ବଦନ ଚାହାନ୍ତିକେ ଗୋ । ପ୍ରବିଶ ରାଧେ, ମାଧବ ସମୀପ ଲଜ୍ଜା ତେଜି, ରତି ଯେନ କାମ ମତି ହେଜି ଗୋ । କାନ୍ତିର ମଙ୍ଗଳ କରି, ଶ୍ରାନ୍ତେ ଶ୍ରାନ୍ତ ପରିହରି, ପ୍ରୀତ୍ୟ ପରି-ରମ୍ଭାରମ୍ଭ ଭଜ ଗୋ । ଏ ନବ ଅଶୋକ ଦଳ, ଶେଯେ ବିଛାଅ ରଞ୍ଜିଲ, ସାତ୍ତ୍ୱିକ

ତରଲକ ହାରେ । ସୁକୁସୁମ ସୁକୁମାର, ସୁଦେହା ବାଲସକର ସୁଗନ୍ଧ କୁସୁମ ସୁରୁ-ଚିତେ ଗୋ । ପ୍ରବଶରାଧେ, ମାଧବ ସମୀପ ଲଜ୍ଜାତେଜ, ରତି ଯେନ କାମମତ ହେଜ ଗୋ । ୩ । ତରଳବଲୟାନକ, ପରିମଳେ ସୁଶୀତଳ, ଏଥିତେ ବାଲସ ଭାରଭରା । ରସବଲ୍ଲୀ ତରହିତ, ଗାନେ ହରକାନ୍ତ ଚିତ୍ତ, ଧୀର ଧୀର ଅଧୀରା ସୁଧୀରା ଗୋ । ପ୍ରବଶ ରାଧେ, ମାଧବ ସମୀପ ଲଜ୍ଜାତେଜ, ରତି ଯେନ କାମମତ ହେଜ ଗୋ । ୪ । ସୁଘନ ବାହୁ ବଲ୍ଲରୀ, ନବପଲ୍ଲବେ ମାଧୁରୀ, ଜଡ଼ିତ ପାଦପ କାନ୍ତ ଅଙ୍ଗ । ଘନପୀନ ଗଗନେର, ଶର ଅଲସରେ ହର, ରଚେ ବାଲସହ ରତିରଙ୍ଗେ ଗୋ । ପ୍ରବିଶ ରାଧେ, ମାଧବ ସମୀପ ଲଜ୍ଜା ତେଜ, ରତ ଯେନ କାମ-ମତ ହେଜ ଗୋ । ୫ । ମଟୁପ୍ରଫୁଲ୍ଲ କଲ୍ପତ, ରବ ମଟୂର ଉଦିତ, ତୁମି ହସ୍ତ ପଦ୍ମିନୀ ନାକର । ଅଷ୍ଟ ଅଷ୍ଟ ଗୁଟନେ ଛଷ୍ଟ, ଦେବୃଭଙ୍ଗ ଭରେ ହୃଷ୍ଟ, ହେଇ ବିଧି ରଚିବ ଚମତ୍କାର ଗୋ । ପ୍ରବଶ ରାଧେ ମାଧବ ସମୀପ ଲଜ୍ଜା ତେଜ, ରତି ଯେନ କାମମତ ହେଜ ଗୋ । ୬ । ଅଟେ ଶିଖର ରୁଚିର, ରୁଚିରଦନା ମୁଖର, ଧ୍ୱନି କରେ ସମତ କୋକିଲ । ତୁମାର ରସଗର୍ଭ ବାଣୀ, ତାକେ କରିଁ ଧରେ ମନ ସତ୍ୱର ବାଲସ କାଲ କୋଲ । ପ୍ରବଶ ରାଧେ, ମାଧବ ସମୀପ ଲଜ୍ଜା ତେଜ, ରତି ଯେନ କାମମତ ହେଜ ଗୋ । ୭ ।

ଶ୍ଳୋକଃ ।

ଶ୍ରାଂଶଭେନ ଶବବଦନପ୍ରମତ ଶ୍ରାନ୍ତେ ଭୁଙ୍ଗ ତାପିତଃ ।
କନ୍ଦର୍ପେଣପୋତୁ ମିଚ୍ଛତ ସୁଧାସମ୍ବାଦ ବମ୍ବାଧରଂ ।
ଅସ୍ୟାଙ୍ଗତଦଲଂ କୁରୁଷଣମିନ୍ଦ୍ରଂ ଭ୍ରକ୍ଷେପ ଲକ୍ଷ୍ମୀଲବ ।
କିଂତେଦାପଇବୋପସେବନ୍ତ ପଦାମ୍ଭୋଜେ କୁତଃ ସମ୍ଭ୍ରମଃ ।

ବାଙ୍ଗଳାଛନ୍ଦ ।

ଶରକାଳ ଯେଉ ଶଶୀ, ତୁମାଟର ବଦନ୍ୟୁ । ଶ୍ରାନ୍ତେ, କନ୍ଦର୍ପ ତାପିତ ହୟୁଁ ଅଛି । ସୁଧା ସମ୍ବାଦତେ ଯୋଗ୍ୟ, ବମ୍ବାଧର ରାଗବାଞ୍ଛା, କରୟୁଁ । ଅସସ୍ତୁ ପ୍ରାପତ ଗୋ । ଶ୍ରୀରାଧେ, ଛଳନ ତମାଲ ଦଲପ୍ରାପ୍ୟେ କରତଳେ ଆନନ୍ଦ ଉଦୟେ ଗୋ । ଭ୍ରକ୍ଷେପ ଲକ୍ଷ୍ମିକେ ଲବେ, ଅଲଙ୍କୃତ କର ଅବେ, ତବେ କତନାଥ ସେଇ ପାବେ ଗୋ । ଯେ ସେୟୁ କଙ୍କବରେ, ପାଦପଦ୍ମ ସେବାକାରୀ, ତାତେ କୁନ ସମ୍ଭ୍ରମେସଲଜେ । ଶ୍ରୀଚନ୍ଦନ ବୋଲେ ଶୁନ, ଠାକୁରାଣୀ ନିବେଦନ, ମଣ୍ଡ ଶ୍ରୀଚରନ କୁଞ୍ଜେ କୁଞ୍ଜେ ଗୋ । ଶ୍ରୀରାଧେ, ପ୍ରାନନାଥ ଶରଣାଗ ହର, ଅଙ୍କ-ପଲ୍ଲଙ୍କରେ ବଜେକର ଗୋ । ୨ ।

ଶ୍ଳୋକଃ ।

ସାସାଂ ସାଧ୍ୟ ସମାନନ୍ଦଂ ଗୋବର୍ଦ୍ଧନ ବ୍ଲେକ ବ୍ଲେଚନା ।
ପିଶ୍ଚାନ ମଞ୍ଜୁ ମଞ୍ଜୀର ପ୍ରବବେଶ ନବେଶନଂ ।

ପୟାର ।

ଶ୍ରୀକୃଷ୍ଣ ଅନଙ୍ଗସିନ୍ଧୁ ଉଚ୍ଛୁଳିପଁ। ଗେଲ, ସକଲ ଇନ୍ଦ୍ରିୟଗଣ ଉଦୟ ହଇଲ ହେ । ୧ । ଗୋବର୍ଦ୍ଧନ ନେତ୍ରାନନ୍ଦନ ନଯ୍ନ ଅଚଲ, ବ୍ରଜପ୍ରା ମଞ୍ଜୁ ମଞ୍ଜୀର କୁଞ୍ଜେ ପ୍ରବେଶିଲ ହେ । ୨ । ଶ୍ରୀରାଧା ବଦନ ବିଚୋଳକନେ ବଂଶୀଧାରୀ, ବିକସିତ ବିବିଧ ବିକାର ଅଙ୍ଗେ ଭଲ ହେ । ୩ । ଜଲନିଧି ହେରି ଯଥା ଚନ୍ଦ୍ରମା ମଣ୍ଡଲ, ଉଚ୍ଛୁଳ ଉଚ୍ଛୁଙ୍ଗ ତରଳତେ ତରଲିଲ ହେ। । ୪ । ଚିର ଅଭିଲାଷେ ଧୀର ଏକ ରତିରସେ, ସର୍ବାଙ୍ଗ ବାଞ୍ଛିତ ପୂରିତ ଅଲସ ବିଲାସେ ଗୋ ।୫। ବିଶେଷ ବ୍ଲେକନେ କାନ୍ତ ସହରସ ବସ, ବଚନ ରଚନେ ମୁଖ୍ ଅନଙ୍ଗ ବିକାଶ ଗୋ । ୬ । ଅମଲ ମୁକୁତାହାର ତାରତର ମଧ୍ୟ, ଲମ୍ବିତ ମନ୍ଦ୍ରମନ୍ଦ କପାଟ ହୃଦୟ ଗୋ । ୭ । ନିର୍ମଳ ଯମୁନାଜଳେ ପୂର୍ଣ୍ଣ ଅବଲମ୍ବ, ସ୍ଫୁଟତର ବିଲମ୍ବିତ ଫେନ ନିକୁରୁମ୍ବ ହେ ॥ ଶ୍ୟାମଲ-ମୃଦୁଲତର ଶ୍ରୀଅଙ୍ଗ ମଣ୍ଡଲ, ମଧ୍ୟଗତ ବିରାଜିତ ଗଉର ଦୁକୁଲ ହେ ।୯। ଯେନ ଲବଣ୍ୟ ଉପଲ ଶ୍ରୀନୀଲ ଉତ୍ପଳ, କମନୀୟ ଧାରେ ପୀତ ପରାଗ ପଟଲ ହେ । ୧୦ । ମନୋହର ଅଞ୍ଚଲ ଚଞ୍ଚଲ ଦୃଗଞ୍ଚଲ, ପ୍ରଫୁଲ୍ଲ ସୂରତ ରାଗ ବଦନ କମଲ ହେ । ୧୧ । ଶରଦ ତଡ଼ାଗେ ସ୍ଫୁଟ କମଲ ଉଦର, ଖେଳନ୍ତା ଖଞ୍ଜନ ଦ୍ୱୟ କିବା ଚମତ୍କାର ହେ । ୧୨ । ମକର କୁଣ୍ଡଲ ଚଣ୍ଡକର ପ୍ରଭାହର, ବଦନ ଉମଲ ପରଶୀଲନ ମାଧୁର୍ଯ୍ୟ ହେ । ୧୩ । ମନ୍ଦ ମନ୍ଦ ହାସ ଗୃହ ଉଜ୍ଜ୍ୱଳ କର୍ପୂର, ରତ କୃତ ଲୋଭ ନବପଲ୍ଲବ ଅଧର ହେ । ୧୪ । ସୁବେଶ କୁସୁମ ଗାତ୍ର ସୁନ୍ଦର ସିନ୍ଦୂରେ, ଉଚ୍ଛୁଳିତ ଚନ୍ଦ୍ରକର ନୀଲ ଜଳଧରେ ହେ । ୧୫ । କପୋଲେ ଚନ୍ଦନ ବିନ୍ଦୁ ଅତି ଅନୁପମା, କାଲମେଘ ଉଦେ ଯେନ ନିର୍ମଲ ଚନ୍ଦ୍ରମା ହେ । ୧୬ । ବିପୁଲ ପୁଲକ ତୁଲ ନୀପ ଫୁଲ ତୁଲ, କିବା ରତିକେଲି କଳ୍ପ ଅଙ୍କୁର ବହୁଲ ହେ । ୧୭ । ମନ ଗମନ କରନ ସମୂହ ମଙ୍ଗଲ, ରସାନ ସୁଭଗ ଅଙ୍ଗ ଅଲେକ ନିର୍ମଳ ହେ । ୧୮ । ଓହେ ସଖି ଭକ୍ତଗନ ସାକ୍ଷୀ ହୟ ମନେ, ଏ ସମସ୍ତ ଶ୍ରୁତି ହବେ ନିର୍ମଲ ନୟନେ ହେ । ୧୯ । ଓହେ ପ୍ରେମ ଭକ୍ତଗନ ଅନୁକମ୍ପା କର, ପ୍ରେମ ଭିଷାପାଗେ ଶ୍ରୀଚନ୍ଦନ ଯୋଡ଼କର ହେ । ୨୦ ।

ଉହା ।

ଅନୁକମ୍ପା କର ଭକ୍ତଗନ, ପ୍ରେମଭିଷା ମାଗେ ଶ୍ରୀଚନ୍ଦନ । ୧ ।

ଶ୍ଳୋକଃ ।

ଅତିକ୍ରମ୍ୟା ପାଙ୍ଗଂ ଶ୍ରବଣ ପଥ ପର୍ଯ୍ୟନ୍ତ ଗମନ ।
ପ୍ରୟାସେନୈବାକ୍ଷ୍ଣୋ। ସରଳ ତରତାରଂ ଗମିତୟୋ।
ଇଦାନୀଂ ରାଧାୟାଃ ପ୍ରିୟତମ ସମାଲୋକ ସମୟେ ।
ପ୍ରାତଃ ସ୍ୱେଦାମ୍ବୁ ପ୍ରସରତ୍ତ ବହର୍ଷ୍ୟାଶ୍ରୁ ନିକର ।

ପୟାର ।

ଅତିକାନ୍ତ ଅପାଙ୍ଗେର କର୍ମ ବିଚକ୍ଷଣ, ଶ୍ରବନ ପଥ ପର୍ଯ୍ୟନ୍ତ କରଇ ଗମନ ହେ । ୧ । ପ୍ରିୟ ଲୋକ ଭଙ୍ଗ ଖେଳ ହେଉଛେ ଚଞ୍ଚଳ, ପ୍ରିୟାନେତ୍ର କମଳିନୀ ଅଭିସାର ହୈଲ୍ ହେ । ୧ । ତରଙ୍ଗ ଉଠିଲେ ଯେବ ପଦ୍ମ ଭୃଙ୍ଗ ମେଲ, ଉଚ୍ଛୁଳିଧା ପ୍ରେମସିନ୍ଧୁ କୂଳ ଲଙ୍ଘି ଗେଲ ହେ । ୩ । ପ୍ରେମାନନ୍ଦ ମହାନନ୍ଦ ରସାନନ୍ଦ ମୟ, ପ୍ରିୟତମା ପ୍ରିୟତମ ଲୋଚନ ସମ୍ପର୍କ ହେ । ୪ । କନକ ଚମ୍ପକଲତା ଆନନ୍ଦାଶ୍ରୁ ଜଳ, ରସ ବିଳାସ ଉଲ୍ଲାସ ସମ୍ପଦ ପଡ଼ିଲ ହେ । ୫ ।

ଉଦ୍ଧା ।

ପ୍ରେମସିନ୍ଧୁ ଉଚ୍ଛୁଳିଲ, କୂଳକୁ ଲଙ୍ଘିଯା ଗେଲ । ୧ ।
ପ୍ରିୟାପ୍ରିୟ ଲୋଚନରେ, ଅତ୍ୟନ୍ତ ଆନନ୍ଦଭରରେ । ୨ ।

ଶ୍ଳୋକଃ ।

ଭବନ୍ତ୍ୟା ସ୍ତସ୍ତାନ୍ତ କୃତ କପଟ କଣ୍ଡୂ ତିପିହିତ ।
ସ୍ମିତଂ ଯାତେ ଗେହା ବହିର ବହିତାଲୀ ପରିଜନେ ।
ପ୍ରିୟାସ୍ୟଂ ପଶ୍ୟନ୍ତ୍ୟା ସ୍ମରଶର ସମା କୂତ ସୁଭଗ ।
ସଲଜ୍ଜା ଲଜ୍ଜାପି ବ୍ୟଗମ ଦିବଦୂରେ ମୃଗଦୃଶଃ ।

ପୟାର ।

ସୁକୁସୁମ ଛଳା ଅନ୍ତର୍ଗତ ପ୍ରିୟଜନ, କୃତ କପଟ କଣ୍ଡୂର ଇଙ୍ଗିତେ ଉଦ୍ଦୀର୍ଣ୍ଣ ହେ । ସମସ୍ତ ଜାଣିଯା ବୃନ୍ଦା ନେଇ ଆନ୍ତେ କହିଲ, ସ୍ମିତହାସେ ସଖିଗଣ ଅନ୍ତର ହଇଲ ହେ । ୨ । ତରଙ୍ଗ ନୟାନେ ପ୍ରିୟ ମୁଖ ଚନ୍ଦ୍ରଦେଖି, ଚୁଣ୍ଡ ହୈଲେ ସ୍ମର ରସ ବର୍ଦ୍ଧର ସମ୍ମୁଖି ହେ । ୩ । ସୁଭଗ ସ୍ମରକଳି ମୂର୍ତ୍ତି ନେତ୍ରମାତ୍ରେ ଛୁଇଲ, ନାଜାନିଲ ଚନ୍ଦ୍ରମୁଖୀ କୁଥା ପାଲାଇଲ ହେ । ୪ । |

ପୟାର ।

ଏକାଦଶ ଛନ୍ଦ ବ୍ୟାଖ୍ୟା ହୈଲ ସମାପତ, ଶ୍ରୀଗୁରୁ ଗୋବିନ୍ଦପାଦେ କୋଟି ପ୍ରଣମିତ ହେ । ୨ । କ୍ଷେତ୍ରଗୁରୁ କୃପାମୟୀ ଶ୍ରୀମନ୍ତ କିଶୋରୀ, ମଦନମୋହନ ଅନଙ୍ଗ ନିବାସ ଯାହାର ହେ । ୨ । ପଦ୍ମାବତୀ କାନ୍ତ ଜୟଦେବ କବିରାଜ,

ଶୃଙ୍ଗାର ବିବେକ ତତ୍ତ୍ୱ ନିରୂପଣେ ଅର୍ଥ ହେ । ୩ । ତାର କି ପାଇବେ ତାର ବଦନ ଉଦ୍ଗୀର୍ଣ୍ଣ; ଅଜ୍ଞାନ ପିଣ୍ଡିକ କରେ ଉଚ୍ଛିଷ୍ଟ ଚର୍ବଣ ହେ । ୪ ଉଜ୍ଜ୍ୱଳ ରସ ସ୍ୱାଦୁତ ଜନା ଯେଇ ହୟ, ଏଇ ଗୀତ ବନମାଳୀ ଗୀତରେ ପରସ୍ୟ ହେ । ୫ । ପିଣ୍ଡିକେର ନାମେ ମନ୍ତ୍ର ନା ହଏ ବର୍ଣ୍ଣିତେ, ଶ୍ରୀଚନ୍ଦନ ଶବ୍ଦେ ଦୋଷ ନା ଲୟ ମହାନ୍ତେ ହେ । ୬ । ଅଜ୍ଞାନ ପ୍ରେମସାମ୍ୟର ନଦ୍ୟାଦଶ ଗୁଡ, କୀର୍ତ୍ତନ କର ଓହେ ମିଷ୍ଟ ଲଙ୍କ ଜ୍ଞାନ ବୃନ୍ଦ ହେ । ୭ ।

—:*:—

## ଦ୍ୱାଦଶ ଛାନ୍ଦ

ଶ୍ଳୋକଃ ।

ଗତବତୀ ସଖିବୃନ୍ଦେ ମନ୍ଦ ତ୍ରପାଭର ନିର୍ଭରଂ ।
ସ୍ମରଶର ବଶା କୂତଃ କୃଷ୍ଣ ସ୍ମିତ ପିହିତାଧରଂ ।
ସରସ ମନସଂ ଦୃଷ୍ଟ୍ୱା ହୃଷ୍ଟା ମୁହୁର୍ନବପଲ୍ଲବ ।
ପ୍ରସର ଶୟନେ ନିକ୍ଷିପ୍ତାକ୍ଷିମୁବାଚ ହରିପ୍ରିୟାଂ ।

ପୟାର ।

ବୃନ୍ଦାଦି ସକଳ ସଖୀ ହଇଲ ଅନ୍ତର, ବିନୋଦିନୀ ମୁଖ ଅଙ୍ଗ ହେରଲ ନାଗର ହେ । ୧ । ମନ୍ଦତ୍ରପାଭରେ ପୂର୍ଣ୍ଣରେ କଲେବର, ସାତ୍ତ୍ୱିକ୍ୟ ସୌରଭ୍ୟ ଗୋପନୀୟ ବ୍ୟବହାର ହେ ।୨। ସ୍ମର ଲୀଳା କୁତଜ୍ଞାତ ବଳନୟନାନ୍ତେ, ଅଧର କରଇ ସ୍ନାନ ମନ୍ଦ ହାସ୍ୟାମୃତେ ହେ । ୩ । ବ୍ୟାଧିବନ୍ତେର ବାଞ୍ଛିତ ବଦାଙ୍କିବା ଯାଚେ, କିବା ଉସଦ୍ରୁମେ ମନୋରଥ ଫଳ ପାଚେ ହେ । ୪ । ନବୀନ ପଲ୍ଲବାଙ୍କୁର ଯେ ଯେ ପ୍ରିୟଶ୍ରୀକ୍ୟ, ହରସ ଅଳସ ହେର ସନ୍ତୁଷ୍ଟ ରସିକ ହେ । ୫ । କ୍ଷମାର୍ଦ୍ଧେ ନେତ୍ରବଦନେ ଅସ୍ୱାଦ ସେ ରସ, ରସିକ ରତନ କେଳି ବିନୟ ବିଶେଷ ହେ । କାମିନୀ ରତନ ଧନୀ ଚରଣ ନଳିନ, ବିଶାଳୟ ଶେଯରେ କରୁ ନିବେଶନ ହେ ।୭। ସେବାଦ ପଲ୍ଲବ ହର କୈଶ୍ୱ ପରାଜୟ, ଆମାର ହୃଦ ପ୍ରବେଶ ସୌଭାଗ୍ୟ ଅଲୟ ଗୋ । ୮ । ଶ୍ରୀଚରଣ ଲକ୍ଷ୍ମୀସେବା ପ୍ରଲବ୍ଧ୍ୟ କରନ୍ତ, ଅନୁଗତ ଜନା ପ୍ରତେ ବହନ ଉଜାହ ଗୋ । ୯ । କରପଦ୍ମେ ଆମି ତୁମାର କମଳଚରଣେ, ସେବନ କରବ ପ୍ରିୟେ ଅସ ସନ୍ନିଧାନେ ଗୋ । ୧୦ । ସନାର୍ଦ୍ଧେ ହୃଦୟ ତଟେ କରହ ବିରାଜ; ନୂପୁରେର ଗୀତଧ୍ୱନି ପୂରନ ସରେକ ଗୋ । ୧୧ । ବଦନ ଚନ୍ଦ୍ରମାରୁ ଗଳିତ ଅମୃତ, ରଞ୍ଜିୟ ବଚନ ଅନୁକୂଳେ ସୁଲଳିତ ଗୋ ।୧୨। ନିମେଷ ନା କର ହରବାସ ଦୂର ହେଉତ, ଏ ବହେ ଚର ବିରହ ନିବହ ଇଙ୍ଗିତେ ଗୋ । ୧୩ । ପ୍ରିୟେ ପ୍ରିୟ ପରବୃନ୍ଦ ଅଙ୍କୁର ପୁଲକେ. ବିଗଳିତ ସ୍ୱେଦ ଜଳ ଯମକ ଝଲକେ

ଗୋ । ୧୪ । ମତ୍ତଭରେ କୁଚଦ୍ୱୟ ବାନ୍ଧବେଣ କର; ହର ହର ହରବୈରୀ ପ୍ରତାପ ନିକର ଗୋ । ୧୫ । ଅଧରୁ ଅମିୟରସ କର ବିତରନ, ଦୁଖ ରାଖ ଧନ ମୃତ୍ୟୁ ଦାସେର ଜୀବନ ଗୋ । ୧୬ । ତୁମାର ବିରହାନଳେ ଦଗ୍ଧ ହୋଇଛେ ତନୁ, ଶାନ୍ତ ହବେ ଶଶୀମୁଖୀ ରସନା ବାଦନୁ ଗୋ । ୧୭ । ଶର ବିଷାଦେ ଶ୍ରବନ ଦ୍ୱୟ ବିକଳିତ, ରତି କଥାଲାପେ ଧନୀ ତାକେ କର ଶାନ୍ତ ଗୋ । ୧୮ । ବିପଲେ ରଖିଯାଁ ବକ୍ଷ ଅତି କ୍ଲାନ୍ତହୈଲ, ଦେଖ ଦେଖ ଆମାର ତନୁ କେମନ ଦୁର୍ବଲ ଗୋ । ୧୯ । କ୍ଷମନ୍ଦ୍ରୁ ଛେ ଦେଲ୍ଲାଷେ ଲଜ୍ଜିତ ରଙ୍ଗିମା, ହେରିତେ ଜନ୍ଦିତ ହବେ ସୁରତ ଗାରିମା ଗୋ । ୨୦ । ରସିକ ଶେଖରେ ରସ ଗର୍ଭବାଣୀ ଶୁନି, ବିନୋଦିନୀ ନେହେ ଜାତ ସମ୍ମତ ତଖନି ହେ । ୨୧ । ବୋଲେ ଶ୍ରୀଚନ୍ଦନ ପ୍ରାନନାଥ ସୁଖ ଦତେ, ବଶହୈଲ ରସିକନୀ ସ୍ୱୀୟ ଅନୁମତେ ଗୋ । ୨୨ । ସବ ବାଧା ଦୂର ଦୈହେ ସଖି ଭକ୍ତଗନେ, ଶ୍ରୀଚନ୍ଦନ ବନ୍ଦନ କରେ ତୁମାର ଚରନେ ଗୋ । ୨୩ ।

ଶ୍ଳୋକଃ ।

ପ୍ରତ୍ୟଙ୍ଗ ପୁଲକାଙ୍କୁରେଣ ନିବିଡ଼ା ଶ୍ଳେଷେ ନିମେଷେଣଚ ।
କ୍ରୀଡ଼ା କୁତ ବିଲୋକନେଽଧରସୁଧାପାନେ କଥା ନର୍ମଭିଃ ।
ଅନନ୍ଦାଧି ଗମେଣ ମନ୍ମଥ ମହାଯୁଦ୍ଧେପି ତସିନ ଭୁଦୁଃ ।
ଦୂର୍ବଂ ଶୌତୟୋ ବଭୂବ ଲଳିତାରମ୍ଭଃ ପ୍ରିୟମ୍ଭାବୁକଃ ।

ପୟାର ।

ପ୍ରତ୍ୟଙ୍ଗ ପୁଲକାଙ୍କୁର ନିବୀଡ଼ ଅଶ୍ଳେଷେ, କ୍ରୀଡ଼ାକୃତ ବିଲୋକନେ ନିମିଷେ ହେ । ୧ । ବିମ୍ବାଧର ସୁଧାପାନ ନର୍ମ କଥାଲାପେ, ଅନନ୍ଦ ଅଧିଗମନ ଉଭୟ ସମୀପେ ହେ । ୨ । ଅଦ୍ଭୁତ ମନ୍ମଥଙ୍କ ଯୁଦ୍ଧର ଉଦ୍ୟମେ, ଲଳିତ ଅରମ୍ଭ ପ୍ରିୟଭାବେ ସମ୍ଭ୍ରମେ ହେ । ୩ ।

ଶ୍ଳୋକଃ ।

ଦୋର୍ଭ୍ୟାଂ ସଞ୍ଚମିତପୟୋଧରଭରେଣାପୀଡ଼ିତ ପାଣି ଜୈ ।
ରାବଦ୍ଧୋ ଦଶନୈ କ୍ଷତାଧରପୁଟ ଶ୍ରୋଣୀତଟେନାହତ୍ୟା ।
ହସ୍ତେ ନାନମିତଃ କଚେଽଧରସୁଧା ପାନେନ ସମ୍ମୋହିତଃ ।
କାନ୍ତା କ୍ଵାମପି ନୃତ୍ରିମା ଗତେବହୋ କାମସ୍ୟ ବାମାଗତେ ।

ପୟାର ।

ରସବତୀ ରସମତୀ ରସମତ୍ତ ରାଧେ, ରସନିଧି ରସବିଧି ରସାବେଶ ସାଧେ । ରସାଳସା ରସାଭୂଷା ରସାବେଶାମୟ, ଉଦେହୈଲ ରସଦୀନ ରସସମୁଦୟ ହେ । ରସପୂରତରୀ ରସେ ରସିକା ହଇଲ, ରସରାଜ ଶତ୍ର ରସରାଜେ ତୃପ୍ତହୈଲ ହେ ।

ଶ୍ଲୋକଃ ।

ପ୍ରାଲବ୍ଧେ ରତିକେଲି ସଙ୍କୁଳରଣାରମ୍ଭେ ତୟା ସାହସ ।
ପ୍ରାୟଃ କାନ୍ତଜୟାୟ କଞ୍ଚିଦୁପରି ପ୍ରାରମ୍ଭ ଯତ୍ସମ୍ଭ୍ରମାତ୍ ।
ନିଷ୍ପନ୍ଦାଣି ଘନସ୍ତଳୀ ଶିଥିଳତା ଦୋର୍ବଲ୍ଲୀ ରୁତ୍କମ୍ପିତ ।
ବକ୍ଷୋନ୍ମିଳିତ ସଖୀ ପୌରୁଷ ପରସ୍ତ୍ରୀଣାଂ କୁତଃ ସିଦ୍ଧିତ ।

ପୟାର ।

ଧୀର ଲଳିତ ନାୟକ ଅଟେ ପଞ୍ଚବାନ, ଚତୁଃ ଷଷ୍ଟି କଳା ବିଧି ସିଦ୍ଧିତେ ପ୍ରମାନ ହେ । ୧ । ତାତେ କତ ଶତଗୁନେ ଦଲନ୍‌କେଲି ଶ୍ୟାମ, ଯେଉ ବିଧି କଭୁ କାନେ ଶୁନି ନାହିଁ କାମ ହେ । ୨ । ମନ୍ମଥ ମନ୍ମଥହର ଯେଉ ଜୟଯୁକ୍ତ, ତାକେ ଜୟ କେଲି ରାଧେ ସେକାଳେ କୁଣ୍ଠିତ ହେ । ୩ । ବନ୍ଧୁ ପୁରସ୍କାର ଶ୍ୟାମ ସମ୍ଭ୍ରମ ରଞ୍ଜିଲ, ବକ୍ଷସ୍ଥଲେ ଲୟା ଗାଏ ଗାଏ ମିଲ୍ୟା ଗେଲ ହେ । ୪ । ଓହେ ରସାନୁରଞ୍ଜିନି ସଖୀ ଭକ୍ତଗଣେ, ଶ୍ରୀ ଚନ୍ଦନ ଦୁଃଖୀ ନିବେ ଏ ଲୀଳା ଶ୍ରବଣେ ଗୋ ।

ଶ୍ଲୋକଃ ।

କନକ ଜଳଦ ବୈଦ୍ୟା ଗୁରୁ ଲବଣ୍ୟ ପୁରେ ।
ସ୍ଫୁରଦୁତର ତରଲ୍ଲତା ପିତକୌଷେୟ ଚେଲୌ ।
ବ୍ରଣଦ ଭବସ ପାଦାଦ୍ଧେ ମଞ୍ଜୀର ଯୁଗୌ ।
ସ୍ମର ନିଭୃତ ନିକୁଞ୍ଜେ ରାଧିକାକୃଷ୍ଣଚନ୍ଦ୍ରୌଃ ।

ପୟାର ।

ସୁକନକ ଜଳଧର ରୁଚିର ଲବଣ୍ୟ, ଅଙ୍ଗେ ଅଙ୍ଗେ ନୀଳ ପୀତାମ୍ବର ଆଚ୍ଛାଦନ ହେ । ୧ । ଉଭୟର ଯୁଗଲ ଶ୍ରୀଚରଣ ପଙ୍କଜେ, ଯତନ ରତ୍ନ ମଞ୍ଜୀର ଯୁଗଲ ବିରାଜେ ହେ । ୨ ଓରେ ମନ ଏମନି ସ୍ୱରୂପ କର ଲୟ, ନିଭୃତ ନିକୁଞ୍ଜ ମାଝେ ରାଧା କୃଷ୍ଣ ଦ୍ୱୟ ହେ । ୩ ।

ଶ୍ଲୋକଃ ।

ସ୍ମିତହାସ ରୁଚିରାଦ୍ଧ ବନ୍ଧ ଚନ୍ଦ୍ରାବଲୋକଃ ।
ପ୍ରଣୟ କୁତୁକଞ୍ଚ ନେତ୍ରା ନୀଳାବ୍ଜ ନିଳୋ ।
ନବ ବିକସିତ ମଲ୍ଲୀ ମାଲତୀ କୁନ୍ଦମାଳୌ ।
ସ୍ମର ନିଭୃତନିକୁଞ୍ଜେ ରାଧିକା କୃଷ୍ଣଚନ୍ଦ୍ରୌଃ ।

ପୟାର ।

ପ୍ରେମମୁଖ ଚନ୍ଦ୍ରୋଦୟ ଲାବଣ୍ୟ ମାଧୁରୀ, ପ୍ରାନ୍ତେ ସ୍ମିତ ପାନକରେ ନୟନଚକୋରୀ ହେ । ୧ । ପ୍ରନୟ କୁତୁକନୀଲ ପଦ୍ମତୋଲ ଭଙ୍ଗ, ପ୍ରିୟାର

ମାଧୁର୍ଯ୍ୟ ଗାନ୍ଧ ଖେଳନ୍ତେ ଉବଙ୍ଗ ହେ । ୨ । ନବଛକଦମ୍ବ ମଲ୍ଲି ମାଧବୀ ମଲ୍ଲୀଙ୍କା, ବାନ୍ଧୁଳି କୁନ୍ଦନ ଲାଲ ବୃକ୍ଷବାଟିକା ହେ । ୩ । ଏହରୂପ ସ୍ୱରମନ ସ୍ୱରବସପୁଞ୍ଜେ, ଶ୍ରୀ ରାଧା ଶ୍ରୀ କୃଷ୍ଣଚନ୍ଦ୍ର ନାଭୃନ ନିକୁଞ୍ଜେ ହେ । ୪ ।

ଶ୍ଳୋକଃ ।

ଅସଦୃଶ ତନୁଶୋଭା ଧିକୃତାନଙ୍ଗଜାସ୍ୟା
ଟଟରତରସଗର୍ବେ ଭେଦନୀଳା ପ୍ରବାହେ ।
ସ୍ଫୁଟ ସରସିଜବଂଶୀ ଶୋଭମାନାଗ୍ରହସ୍ତୌ ।
ସ୍ମରନାଭୃନ ନିକୁଞ୍ଜେ ରାଧିକା କୃଷ୍ଣଚନ୍ଦ୍ରୌଃ ।

ପୟାର ।

ତନୁଶୋଭିତା ସଦୃଶ ହେଲନ୍ତି କନ୍ଦର୍ପ, ଧିକୃତ କରଇ ପଦାନଖ ଦ୍ୟୁତି-ଦର୍ପ ହେ । ୧ । ରତିରସ ଗର୍ବେ ଭେଦନୀଳ ପ୍ରବାହନ୍ତେ, ସ୍ଫୁଟ ସରସିଜ ବଂଶୀ ଶୋଭି ଅଗ୍ରହସ୍ତେ ହେ । ୨ । ଓରେ ମନ ସ୍ମର ଓରେ ସ୍ମର ବାହୁଲନ୍ତେ, ନାଭୃତ ନିକୁଞ୍ଜେ ରାଧାକୃଷ୍ଣ ସୁନାବୃତେ ହେ । ୩ । ରାଧେ ରାଧେ ପ୍ରାନରାଧେ କୃଷ୍ଣ ପ୍ରାନବନ୍ଧୁ, ଏମନି ଅଶ୍ରୁ ଲୟେ ଘୋଚେ ଦୁଃଖ ସିନ୍ଧୁ ହେ । ୪ । ହେନ ଶ୍ରୀଚନ୍ଦନପାଲ ଦାସୀହଯ୍ୟାଁ, ଦୁହାଁ ଶ୍ରୀନ୍ତ କବୋ ପୁଷ୍ପବଙ୍ଗନି ଲଇଯ୍ୟା ହେ । ୫ ।

ଦୁହା ।

ଏମନ ସ୍ୱରୂପ ଲଯ୍ୟକର, ରାଧାକୃଷ୍ଣ କୁଞ୍ଜରେ ବହାର ।
ଶ୍ରୀଚନ୍ଦନ ହଯ୍ୟାଁ ପାଲ୍ୟା ଦାସୀ, ଦୁହାଁର ଚରନକେ ନିବେଶି । ୨ ।

ଶ୍ଳୋକଃ ।

ତସ୍ୟାପାଟଲ ପାଣିଯାଙ୍କିତମୁରୋ ନିଦ୍ରା କଷାୟୌ ଦୃଶୌ ।
ନିର୍ଧୌତା ଧର ଶୋଣିମା ବିଲୁଲିତା ସ୍ରସ୍ତ ସ୍ରଜୋ ମୂର୍ଦ୍ଧଜା ।
କାଞ୍ଚି ଦାମଦର ଶ୍ଳଥାଞ୍ଚଲମିଡ ପ୍ରାତର୍ନ ଗାତ୍ରେ ଦୃଶୌ ।
ରେଖା କାମଶରୈ ସ୍ତଦମ୍ଭୁତ ପ୍ରତ୍ୟର୍ମନଃ ଛଳିତଃ ।

ଦୀର୍ଘଛନ୍ଦ

ସୁରତ ସମଇ ପ୍ରାନ୍ତେ, ବନୋଦନୀ ଅନ୍ତକ୍ଳାନ୍ତେ, ଭରପଦ୍ମ ରଙ୍ଗିମା ପାଟେଲ । ଜରଜ ଲଉକା ଝଳି, ଲବଅଛେ ପଦାବଳୀ, କଷାଇଛ ନୟନ-ଯୁଗଲ ସେ । ରଙ୍ଗିମା, ଅଟର ରଙ୍ଗିମା ଛୁଟି ଗେଲ, କେଶ ବାସ ଧ୍ୱଦଦେଶ ମାଲ ସେ । ୨ ଫିଟି କାନ୍ତ ରଜୁବନ୍ଧ, ଶ୍ଲଥ ଅଞ୍ଚଲ ନିର୍ବନ୍ଧ, ଚନ୍ଦ୍ରାର୍ଦ୍ଧ ଭୂଷନ ମୃଦୁଅଙ୍ଗେ । କଲଶର ରେଖା ଅଛୁତ, ରିରସେ କୁଲିଶଘାତ, ହେରଯ୍ୟାଁ ରସିକବର ସଙ୍ଗେ ସେ ରଙ୍ଗିମା, ଚାନ୍ଦେର ବକ୍ଷୁତ ହେବ ହବ, କୁଙ୍କୁମ

ବ୍ୟଞ୍ଜନେ ଶାନ୍ତ ଭଇ ସେ । ୨ । ରସବତୀ ଅବେତେ, ଦ୍ୱିଜ ଶ୍ୟାମ ଏକ ରତେ, ସ୍ୱାଧୀନ ଭର୍ତୃକା ହର୍ମ୍ୟ ବୋଲେ । ଓହେ କାନ୍ତ ପ୍ରାନକ୍ଷଣ, କର ତୁମେ ପ୍ରିଣି ବେଶ, ବକ୍ଷସ୍ଥଳ ତୁମି ନାଶି ଧଲ ହେ । ମୋହନ, କେମନ୍ତ ହେବ ସଖି ମୁଖ, ତୁମି ଧଲ କେନ ଅନ୍ତଦୁଃଖ ହେ । ୩ । ଓହେ ବ୍ରଜେନ୍ଦ୍ରନନ୍ଦନ, ଘନ ସାର ସୂଚନ୍ଦନ, ଦୂରଙ୍ଗ କୁରଙ୍ଗ ମଦରସେ । ଭାମ ମଙ୍ଗଳ କଳଶ, ପୀନ ପୟୋଧର ଦେଶ, ପତ୍ରାବଳୀ ରଞ୍ଜିଥା ହରଷେ ହେ । ମୋହନ ନାଶି ଧଲ ସୁବେଶ ସକଳ, ଦେଖି ପ୍ରାନସଖି ଦିବେ ଗାଲ ହେ । ୪ । ଗେଲ ଅଞ୍ଜନ ରଞ୍ଜନ, ଯେ ଅଳିକୁଳ ଗଞ୍ଜନ, ରତ ପତ୍ର ସାଯୁକ ମୋଚନେ । ଚୁମ୍ବନେ ଅଧର ଭଙ୍ଗି, ହୋଇଛେ ପ୍ରଲ-ମ୍ବନ ଭଙ୍ଗି, ରଞ୍ଜନକର ସେପର ରୋଚନେ ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲ ହେ । ୫ । ଶ୍ରୁତି ଯୁଗ ଅପ୍ସରସ, ତରଙ୍ଗ କୁରଙ୍ଗି ଦୃଶ, ପ୍ରକାଶେ ନବ୍ୟଶବନ୍ତ ସେହୁ । ଶ୍ରୁତି ମନସିଜ ପାଶ, ଘନେ କୁଣ୍ଡଳ ନିବେଶ, ଦିଅ ହବେ ତାସ୍ତ୍ର କୃତି ଲହି ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲ ହେ । ୬ । ଯେ ଅଲକା ଅଳିକୁଳ, ବିଭ୍ରମ କୃତେ ଚଞ୍ଚଲ, ତାକେ ଯତ୍ନେ ତାସ୍ତ୍ର ସ୍ଥାନେ ରଖ । ଗ୍ରଥ୍ନର କବଲି ଶ୍ରେଣୀ, ଅସିଯା ଯେମନ ଧଣି, ତେମନ୍ତ ଦିଶଇ ଅମାର ମୁଖ ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଧବେ ଗାଲ ହେ ।୭। ହେର ପଦ୍ମାଦି ଜନେ ବସନ ଦର୍ମ୍ୟ ବସ୍ନାନେ, ହାସିଛେ ଭ୍ରମର ଲଜ୍ଜାଜଲେ । ପେଇ ଅମଲ କମଲ, ଯେ ଶୋଭିବେ ହର ନାଲ, ନିଃସଙ୍ଗତ କୈଲ କୁନ ବଲେ ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲହେ । ୮ । ସେଇ ବଦନ ସାରସେ, ଲଳିତ କସ୍ତୁରୀ ରସେ, ତିଲକ ଅଲକ କଲ୍ପ ରଚି । ବଦ୍ଧର୍ମ୍ୟ ଶ୍ରମ ସଲିଲ, ତାହାକେ ଧୋଇଯାଁ ଧଲ, ହୈଲ କାଲାଗ୍ନିଦେବ ସୁସଞ୍ଚି ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲ ହେ । ୯ । ଭ୍ରମର ମମ ଚିକୁର, ତାକେ ସୁସାଜେନ୍ତ ବର, ସମହବେ ମଦନ ଚାମର । ରଞ୍ଜିଲେଣ କୁସୁମ, ମିଳିଛେ ହବେ ସୁସମ, ତବ ଚନ୍ଦ୍ରଚୂଲ ଅଡ଼ମ୍ବର ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲ ହେ । ୧୦ । ସରସ ଘନ ଜଘନ, ଧୈର ସମ୍ଭବ ବାରନ, ବାରନ କନ୍ଦର୍ପ ଚମତ୍କାର । ମନ୍ତ୍ର ବସନ ଦସନ, ଅବ-ରନ ବିଭୂଷନ, ପ୍ରସନ୍ନ ରଞ୍ଜିବ ମନୋହର ହେ । ମୋହନ, ନାଶିଧଲ ସୁବେଶ ସକଲ, ଦେଖି ପ୍ରାନସଖି ଦିବେ ଗାଲ ହେ । ୧୧ ।

ଶ୍ଲୋକଃ

ରଚୟ କୁଚୟୋଃ ପତ୍ରଂ ଚିତ୍ରଂ କୁରୁଷ୍ୱ କପୋଲୟୋ ।

ଘଣ୍ଟସ୍ୟ ଜଘନେ କାଞ୍ଚି ଶ୍ରସ୍ତ ଶଙ୍ଖା କବଗ୍ର ଭରଂ ।
କଳସ୍ୟ ବଳସ୍ୟ ଶ୍ରେଣୀ ପାଣୌ ପଦେ କ୍ରୁଷ୍ଣନୂପୁର ।
ଏତନଗଦିତଃ ପ୍ରୀତଃ ପୀତାମ୍ବରେପି ତଥା ଭବେତ୍ ।

ଦୀର୍ଘଛନ୍ଦ

କୁଚେ ପତ୍ରାବଳୀ ରଞ୍ଚ, କପୋଳେ ତିଲକ ସଞ୍ଚ, ଘନ ପିନ ଜଘନେ ରସନା । ସାଜସ୍ୟିଁ କବସ୍ତ୍ରଭର, ଶିରେ ଗାଭ୍ର ଉରେ ହାର, ଖଞ୍ଜିସ୍ୟିଁ ବଳସ୍ୟ ନୁପୁ-ଝିନା ହେ । ମୋହନ, ନାଶିଦିଲ ସୁବେଶ ସକଳ, ଦେଖି ପ୍ରାନସଖି ଦିବେ ଗାଲ ହେ । ୧ । ତୁମାର ସୁବେଶ ଅପାର, ନୂପୁର ହଇଛେ ଦୂର, ତାହାସ୍ଥାନେ ତାଭେ ଘଣ୍ଟି ବନ୍ଧୁ । ଯେ କଇଲ ଅତ ବ୍ୟସ୍ତ, ସେ କ ନାହଇ ସୁସ୍ଥ, ଦେଖ କତକାଲ ମୁଖଇନ୍ଦୁ ହେ । ମୋହନ, ନାଶିଦିଲ ସୁବେଶ ସକଳ, ଦେଖି ପ୍ରାନସଖି ଦିବେ ଗାଲ ହେ । ୨ । ବିନୋଦି ବିନୋଦ ବାଣୀ, ବିନୋଦବେହାର ଶୁନ, ପ୍ରନସ୍ୟ ଶେଖର ପୀତାମ୍ବର । ଚେନୁ ମସ୍ତକ ଲସ୍ୟିଁ, ଲଖାଦି ଗାଭ୍ର ସାଜସ୍ୟି, କଇଲ ତେମନ ସୁଲ୍ଲଭ ହେ । ମୋହନ, ଅତକାଞ୍ଚଲ ସଖି ଭାଗ୍ୟ ଜାଲ, ପ୍ରତ୍ୟଙ୍ଗ ସମର୍ପି ସାଧେ ଦିଲ ହେ । ୩ । ବୋଲେ ଶ୍ରୀଚନ୍ଦନ ରସ, ରାଜରସ ରାଜବେଶ, ରସମୟୀ ରସିକାକେ କୈଲ ହେ । ମୋହନ, ଅତକାଲେ ସଖି ଭାଗ୍ୟ ଜାଲ, ପ୍ରତ୍ୟଙ୍ଗ ସମର୍ପି ସାଧେ ଦିଲ ହେ ।

ଶ୍ଳୋକଃ

ମୌଳୌ କେକୀ ଶିଖଣ୍ଡୀନ ମଧୁରିମା ଧାରାତରେ ସ୍ୱୈରଣୀ ।
ପିନାଂଶେ ବନମାଳନୀ ହୃଦିଲସଦ୍ଧାରୁଣ୍ୟକଲ୍ଲୋଲନୀ ।
ଶ୍ରୋଣ୍ୟା ପୀତ ଦୁକୂଳନୀ ଚେଣ୍ୟୟୋ ସନ୍ୟସ୍ତ ବନ୍ୟାସିନ୍ନ ।
ନୀଳାକାଞ୍ଚନ ଦେହନୀ ବିଜୟତେ କାରୁଣ୍ୟ ଲକ୍ଷ୍ମୀମୟଂ ।

ପୟାର

ଶିରେ ଶୋଭି ଗାଭ୍ର ପରେ ମୟୂରଚନ୍ଦ୍ରିକା, ମହାମାଧୁରିମା ସିନ୍ଧୁ ତରଙ୍ଗ ବଦ୍ଧିକା ହେ ।୧। ଶ୍ରବନ ଯୁଗଳେ ଗୃହ୍ଣ ମକରକୁଣ୍ଡଳ, ଉରେ ନୀଳ ଗୈଲପରେ ଦିବ୍ୟ ବନମାଲ ହେ ।୨। ନାସାତେ ନଥିନ୍ନ ସାଥେ ମାନିକ୍ୟ ବସନ, ଅରୁନ ଅଧର କାରୁଣ୍ୟର କଲ୍ଲୋଳନୀ ହେ । ୩ । କପୋଳେ ଚନ୍ଦନବିନ୍ଦୁ ପୂର୍ଣ୍ଣଚନ୍ଦ୍ର ତୋରା, ଚନ୍ଦନେର ଅଙ୍ଗମ୍ବର ଗୃହ୍ଣ ଅଙ୍ଗକୋର ହେ । ୪ । ନୟନ କାଜଲରଞ୍ଜି ଚୁମ୍ବଇ ଶ୍ରବନ, ମଦନ ଯନ୍ତ୍ର ଗୁଲିନ ଅଲକା ପ୍ରସନ୍ନ ହେ । ୫ । ମରକତ ଚୁଡ଼ି କରେ କୃଷ୍ଣରୁପେ ବାଦ. ... ନ ମନ୍ନ ନାପୁର କୁଣ୍ଡେ ଅ ତ୍ରପଦ ହେ । ୬ । କଟିତଟେ ପୀତାମ୍ବର ନଟବର ଛବି, ଉରସ୍ଥଳେ କାଞ୍ଚଲିକା ଇନ୍ଦ୍ରନୀଲ ଛବି

ହେ । ୭ । ଭରଜ ମର୍କତ ଶଙ୍ଖ ହସ୍ତ ଶୋଭାବନ, ବନମାଳ ବୈଜୟନ୍ତୀ ହଇଛେ ମଣ୍ଡନ ହେ । ୮ । ସୁବାଞ୍ଚି ମଣ୍ଡନମାଳ କାଞ୍ଚନ ଦେହନୀ, ସ୍ୱର୍ଣ୍ଣେ ଶ୍ରୀକାରୁଣ୍ୟ ଲକ୍ଷ୍ମୀ ମୋହନମୋହନୀ ହେ । ୯ । ବେଣ ଶେଷେ କଶ୍ୱାନ୍ଦ୍ରଗମନା କରଧର, ବ୍ରଜପ୍ୟେ ନୈଋତ କୁଞ୍ଜେ ମୋହନ ବାଶୀଧାରୀ ହେ । ୧୦ । ସମସ୍ତ ଜାନନ୍ଦୀଃ ସଖୀ ମଣ୍ଡଳ ଅଇଲ, ଶୋଭାମୃତ ନେହମୁଖେ ହୃଷ୍ଟେ ପାନ କୈଲ ହେ । ୧୧ ।

ଶ୍ଳୋକଃ

ମିଳନଂ ନୈଋତ କୁଞ୍ଜେ ଜାୟତେ ପୂର୍ଣ୍ଣିମା ତଥୌ ।
ତଯୋସ୍ତୁ ପୂର୍ଣ୍ଣ ସୁଖଦେ କୁଞ୍ଜେ ରାସୋତ୍ସବ ଭବେତ୍ ।

ପୟାର

ସକଲ ମଞ୍ଜରୀ ସବସଖୀ ଅଛେ ଘେରି, ମାଝେ ବଜେ ବନୋବନୀ ବନୋଦବିହାରୀ ହେ । ୧ । ଯେମନ ପରମଗୁନ୍ନ ଗନେର ସମାଜେ, ବରଜ ଲବଣ୍ୟ ନୃତ୍ୟକାର ହସ୍ତ ସାଜେ ହେ । ୨ । ସେଇ ରୂପହସ୍ତ ଯାନେ ଶ୍ରୀଚନ୍ଦନ ଭ୍ରମେ, ପୂର୍ଣ୍ଣ ସୁଖଦାର କୁଟଞ୍ଜ ଚଲେ ରାସରସେ ହେ । ୩ ।

ଶ୍ଳୋକଃ

ଶ୍ରୀରାଧା ରତିଭାବ ମୁଗ୍ଧହୃଦୟା ସ୍ୱାଭ୍ୟଃ ସଖୀଭିଃ ସମଃ ।
ପାଣୌ ପୁଷ୍ପ ଧନୁ ଶରାଂ ବିଦଧତ ବୃନ୍ଦାବନେ କ୍ରୀଡ଼ତ ।
ଅଶ୍ଳେଷେ ରତ ଚୁମ୍ବନୈ ରତକଥାଲାପୈ ସ୍ତନୁରର୍ପିତା ।
ଗୋବିନ୍ଦେନ ସମଂ ସଖୀଗଣବୃତା ରାସୋତ୍ସବଂ କୁର୍ବତ ।

ରାଗ ବଙ୍ଗଳା ଶ୍ରୀ

ରାଧା ରତିଭାବେ, ପ୍ରମୁଗ୍ଧ ହୃଦୟା, ପ୍ରାନସଖୀଗନ କାଛେ ହେ ।
ରସିକଜନକରେ, ଫୁଲ ଧନୁଶର, ଶ୍ୟାମ କରେ ବାଶୀ ଅଛେ ହେ ।
କୁଞ୍ଜବନେ ଶୋଭାକର, ପୂର୍ଣ୍ଣ ସୁଖଦା କୁଟଞ୍ଜ ବିହରୀ ହେ । ୧ ।
ମୃଦୁ ଅଲିଙ୍ଗନେ, ରୁଚିର ଚୁମ୍ବନେ, ରତିକଥା ଅଲାପନେ ହେ ।
ଗୋବିନ୍ଦକେ ତନୁ, ସମର୍ପି ଦିଅଛେ, ସବ ସଖୀଗନ ସନେ ହେ ।
ରାସଉତ୍ସବ ଉଲ୍ଲାସେ, ମତ ଜସ୍ତୁକ ରତ ବିଳସେ ହେ । ୨ ।

ଶ୍ଳୋକଃ

ଶ୍ୟାମାଙ୍ଗାଙ୍କିତ ଗୌର ଦେହ ଲତାୟା ମେଘଚ୍ଛଟା ତନ୍ୱୀତୀ ।
ଚନ୍ଦ୍ରାନ୍ତ ବକଗୁମ୍ଫଲା ହସ୍ତନ୍ତର ପଦ୍ମଂ ତରସ୍କ ବର୍ତ୍ତିତଂ ।
ହକାରାଂ ରତକେଳି ଭାବ ଚତୁର ସ୍ତ୍ରୀଣାଂ ଶିରୋ ଭୂଷଣଂ ।
ଶ୍ରୀମନ୍ନାଗର ରାସରତ୍ନ ଜଳଧି ଶ୍ରୀରାଧିକା ମାଦ୍ୟେ ।

ଝୋଲ

ଶ୍ୟାମାଙ୍ଗ ଅଙ୍କିତ, ଗୌର ଦେହଲତା, ମେଘେ ଯେନ ବିଦ୍ୟୁତ୍ ପ୍ରଭା ହେ ।
ବିକଚ ପଦ୍ମକ, ତରସ୍ବାର କରେ, ଚରଣ ଯୁଗଲ ଶୋଭା ହେ ।
ରାସ ଉତ୍ସବେ ଉଲ୍ଲାସ, ମତ୍ତ ଉତ୍ସୁକ ବିତ ବିଲାସ ହେ । ୧ ।
ସର୍ବାଙ୍ଗେ ସୁରତୀ, କେଲିଭାବେ ଅତି, ବିଦଗ୍ଧ ଚତୁରୀ ଧନୀ ହେ ।
ଶଚୀ ଲକ୍ଷ୍ମୀ ଗୌରୀ, ରତି ଅଧିକରି, ମସ୍ତକ ମୁକୁଟମଣି ହେ ।
ଶ୍ରୀମନ୍ମାଗର ରତନ, ରାସରସ କଳଧିତେ ସ୍ନାନ ହେ । ୨ ।

ଶ୍ଳୋକଃ

ରାସୋଲ୍ଲାସ ବିଳାସ ବଦ୍ଧ ରସିକା ସୌନ୍ଦର୍ଯ୍ୟ ସୀମାଶ୍ରୟା ।
ରାଧା ପ୍ରେମମୟୀ ଶ୍ରିୟା ରତକୃତେ ବୃନ୍ଦାବନେ ସୁନ୍ଦରୀ ।
ଶ୍ରୀକୃଷ୍ଣେନ ସମଂ ପ୍ରଫୁଲ୍ଲ କୁସୁମେ ମତ୍ତ ଦ୍ୱିରେଫୈର୍ଭୃତେ ।
ଶ୍ରୀବୃନ୍ଦାବନ ଦେବତା ବିଜୟତେ ରାଧା ସୁଧା ମଞ୍ଜରୀ ।

ଝୋଲ

ଶ୍ରୀରାସ ଉଲ୍ଲାସ, ବିଲାସ ନିବାସ, ସୌନ୍ଦର୍ଯ୍ୟ ଆଶ୍ରୟ ଧାମ ହେ ।
ରାଧା ପ୍ରେମମୟୀ, ସୁଧା ରତକାରୀ, ସୁନ୍ଦର ବିପିନ ଗ୍ରାମ ହେ ।
ଶୋଭା ନାଗରେନ୍ଦ୍ର ସନେ, ଶଚୀ ଯେମନ ନନ୍ଦନବନେ ହେ । ୧ ।
ପ୍ରଫୁଲ୍ଲ କୁସୁମେ, ପ୍ରମତ୍ତ ଦ୍ୱିରେଫ, ପ୍ରକୃଷ୍ଟେ ଝଂକୃତଭର ହେ ।
ଶ୍ରୀବୃନ୍ଦାବନେର, ଦେବତା ବିଜୟେ, ଶ୍ରୀରାଧା ସୁଧା ମଞ୍ଜରୀ ହେ ।
ଶୋଭା ନାଗରେନ୍ଦ୍ର ସନେ, ଶଚୀ ଯେମନ ନନ୍ଦନବନେ ହେ । ୨ ।

ଶ୍ଳୋକଃ

ପ୍ରେମାନନ୍ଦ ବିଲାସ ଶ୍ରୀରାସ ରସିକା ଶ୍ୟାମା ସରୋଜେକ୍ଷଣା ।
ଗୋପୀମଣ୍ଡଳମଣ୍ଡିତା ବରତନୁ ସିନ୍ଦୁର ସିମନ୍ତିନୀ ।
ଶ୍ରୀବୃନ୍ଦାବନ ରାସ କୌତୁକରସା ପୀନସ୍ତନା ଲଳନା ।
ଶ୍ରୀକୃଷ୍ଣସ୍ୟ ବିନୋଦନୀ ବିଜୟତେ ଶ୍ରୀରାଧିକା ଭାବନୀ ।

ଝୋଲ

ପ୍ରେମରେ ଅନନ୍ଦ, ବିଲାସ ଶ୍ରୀରାସ, ରସିକା ଶ୍ୟାମା ସୁବେଶି ହେ ।
ସରୋଜନୟନା ଗୋପିନୀ ମଣ୍ଡଳ, ମଣ୍ଡନ କୋକିଲ ଭାଷି ହେ ।
ପତି ସମନ୍ତ ସିନ୍ଦୁର, ପତିବ୍ରତା ସିମନ୍ତୀ ସିନ୍ଦୁର ହେ । ୧ ।
ବୃନ୍ଦାବନ ରାସ, କୌତୁକ ବିଧି, ପୀନ ଉରଜା ଲଳନା ହେ ।
ବିଜେ ଶ୍ରୀରାଧିକା, କୃଷ୍ଣ ବିନୋଦନୀ, ଭାବନା ଭାବ ବର୍ଦ୍ଧନ ହେ ।

ପତି ସମସ୍ତ ସିନ୍ଦୂର, ପତିବ୍ରତା ସିମନ୍ତୀ ସିନ୍ଦୂର ହେ । ୨ ।

ଶ୍ଲୋକଃ

ଗୃଞ୍ଚୁର୍ଣ ହେମରୁଚରେ ବୃଷଭାନୁ କନ୍ୟା ।
ମାକର୍ଣ୍ଣ ନେତ୍ର ଯୁଗଳା ନୀଳପଟ୍ଟ ହସ୍ତା
ସ୍ୱର୍ଣ୍ଣ ବିଭୂଷଣ ଯୁତା ନବ ରୋମ ରାଜି
ସନ୍ୟାସ ହସ୍ତ କବରୀ ଯୁତ ଚଞ୍ଚଳାଢ୍ୟା ।

ଚୌପଦି

ଗୃଞ୍ଚୁର୍ଣା କନକ, ରୁଚିର ଶ୍ରୀରାଧେ, ବୃଷଭାନୁ ନୃପ କନ୍ୟା ହେ ।
ଆକର୍ଣ୍ଣଯୁଗଳ, ନୟନ ଅଢୋଳ, ନୀଳ ପଟ୍ଟହସ୍ତା ଧନ୍ୟା ହେ ।
ସ୍ୱର୍ଣ୍ଣ ବିଭୂଷଣ ଯୁତା, ନବ ରୋମରାଜି ଅଙ୍କରାଜିତା ହେ ।
ନୃତ୍ୟ ଭଙ୍ଗି ଠାଣି, ହସ୍ତେ ନ୍ୟାସ ବେଣି, ଚଞ୍ଚଳ ଯୁଗ ଦୃମିତା ହେ
ସ୍ୱର୍ଣ୍ଣ ବିଭୂଷଣ ଯୁତା, ନବ ରୋମରାଜି ଅଙ୍କରାଜିତା ହେ । ୧ ।

ଶ୍ଳୋକଃ

ତପ୍ତକାଞ୍ଚନ ଗୌରାଙ୍ଗି ରାଧାଂ ବୃନ୍ଦାବନେଶ୍ୱରୀଂ ।
ବୃଷଭାନୁ ସୁତାଂ ଦେବୀଂ ପ୍ରଣମାମି ହରିପ୍ରିୟାଂ ।

ଚୌପଦି

ତପତ କାଞ୍ଚନ, ଗଉରବରନ, ରାଧା ବୃନ୍ଦାବନେଶ୍ୱରୀ ଗୋ ।
ବୃଷଭାନୁ ସୁତା, ଦେବୀ ଶଦେଦ୍ଧ ୂତା, ନମୋଃ ହରି ମନୋହାରୀ ଗୋ
ଶ୍ରୀଚନ୍ଦନ ଦୁଃଖ ହର, କୃପା ସୁଧା ଦୃଷ୍ଟି ବୃଷ୍ଟି କର ଗୋ ।
ନାଶଇ କେବଳ, ଭୁଦେବ କପାଳ, ବିଷଦାତ ଜ୍ୱାଳ ଘୋର ଗୋ ।

ଶ୍ଳୋକଃ

ରାଧାସ୍ୟା କଳଧୌତ ଗୌର କରଣେ ବୃନ୍ଦାବନେ ସଂସ୍ଥିତା ।
କୁଞ୍ଜାଳୀତ ମୟୂର କୋକିଳଗଣା ଭୃଙ୍ଗ କୁରଙ୍ଗ ଖଗା ।
କୃଷ୍ଣସ୍ୟା ଲୁତହାସ ରାସ ବନିତା ପ୍ରୋଲ୍ଲାସ ମୁଦ୍ଧାଶ୍ରୟା ।
ସାକ୍ଷାନନ୍ଦ ରସାକରା ବିଜୟତେ ଶ୍ରୀକୃଷ୍ଣ ଗୌରେଶ୍ୱରଃ ।

ପୟାର

ରାଧାଅଙ୍ଗ କଳଧୌତ ଗଉର ବରନ, ଉଜ୍ଜ୍ୱଳୟା ବୃନ୍ଦାବନମାଝେ କେଳି ସ୍ଥାନ ହେ । ୧ । କୁଞ୍ଜନ୍ତ ସତ୍ତ ମୟୂର କୋକିଳ ସୁସ୍ୱରେ, ଭୃଙ୍ଗ କୁରଙ୍ଗ ବିଳଙ୍ଗ ନିକର ନିର୍ଭରେ ହେ । ୨ । ଶ୍ରୀକୃଷ୍ଣ ଅଦ୍ଭୁତ ହାସ ରାସ ବୃଦ୍ଧି ହେଉ, ମୁଦ୍ଧାଗୁନେ ଅଶପୃ ଉଲ୍ଲାସ ଶ୍ରୀକିଶୋରୀ ହେ । ୩ । ସାକ୍ଷାତ ଅନନ୍ଦରସ ନିଧି ବିନୋଦନୀ,

ଶ୍ରୀକୃଷ୍ଣ ଗଉରବେଶ୍ୱସ୍ୱ ହଇଲ ଅପନ୍ନ ହେ । ୪ । ବୋଲେ ଶ୍ରୀଚନ୍ଦନ ଦଖ ଦାସୀ ଠକୁରଗନେ, ବକୁଲ ଡାକିଯୁଁ । ଦଲ ଅବେ ନୀଲନ୍ଦନେ ହେ । ୫ ।

ଶ୍ଳୋକଃ

ଗୌରଭୃଙ୍ଗକୁରଙ୍ଗଃ କୋକିଲଗଣାଃ ଗୌରାଃ ଶୁକଃସାରିକା ।
ଗୌରାଃ ସର୍ବ ମହୀରୁହାଃ ଫଲଚୟ ଗେରାଣି ପୁଷ୍ପାଣିଚ ।
ଗୌରା ଶୁକକପୋତ ଖଞ୍ଜନଚୟାଃ ଗୌରଞ୍ଚ ବୃନ୍ଦାବନଂ ।
ରାଧାଦେହ ରୁଚବୃନ୍ଦା ସଖିବୃନ୍ଦା ଶ୍ୟାମୋଽପି ଗୌରୋ ଭବେତ୍

ଚଉପଦୀ

ନବକିଶୋରୀ, ରୂପ ମାଧୁରୀ, କିବା ଚମତ୍କାର ରେ,
କୁନ୍ଦନକଲି, ଝଲକଝଲି, ସକଲ ଗଉର ରେ । ଘୋଷା ।
ଭୃଙ୍ଗ ଗଉର, ପିକ ଗଉର, ଗଉର ମୟୂର ରେ ।
ଶୁକ ଶାରିକା, ବନଗୃହିକା, କୁରଙ୍ଗ ଗଉର ରେ । ୧ ।
ତରୁନ ଲତା, କୁଲ ଜନତା, ଯୁଗଲ ମଧୁର ରେ ।
ତମାଲ ବନ, ଭୁବ ଗଗନ, ସକଲ ଗଉର ରେ । ୨ ।
ମଲ୍ଲି ମାଲତୀ, ନୀଅଲି ଜାତି, ବନ୍ଧୁକ ମନ୍ଦାର ରେ ।
ନୀଲକମଲ, କୁସୁମ କୁଲ, ସକଲ ଗଉରରେ । ୩ ।
ଚକ୍ର କପୋତ, ଖଞ୍ଜନ ଯତ, ତତ ନୃପତ୍କାର ରେ ।
ଶ୍ରୀବୃନ୍ଦାବନ, ମନ୍ଦ ପବନ, ଗଗନ ଗଉର ରେ । ୪ ।
ଶ୍ରୀରାଧା ଅଙ୍ଗ, କାନ୍ତି ତରଙ୍ଗ, କିବା ଚମତ୍କାର ରେ ।
ଜଲଦ ମାଲ, କାଜଲ କାଲ, ଶ୍ୟାମହିଁ ଗଉର ରେ । ୫ ।

ଶ୍ଳୋକଃ

ଶ୍ରୀରାଧା ସୁଷମାର୍କ ଗୌର କିରଣୈ ରାପୂରିତା ଦିଙ୍ମୁଖଂ ।
ବୃନ୍ଦାରଣ୍ୟସମସ୍ତକଲ୍ପତରବ ସ୍ୱର୍ଣ୍ଣାଙ୍ଗରାଗାବଲିଃ ।
ଗୌରା କୋକିଲ ଭୃଙ୍ଗ ସର୍ବ ପ୍ରସବ ବିସ୍ତାର୍ଣ୍ଣ ବୃନ୍ଦାବନେ ।
ରାଧା ଦେହରୁଚ ବୃନ୍ଦା ସଖିବୃନ୍ଦା ଶ୍ୟାମୋପି ଗୌରୋ ଭବେତ୍ ।

ଚଉପଦୀ

ନବ କିଶୋରୀ, ରୂପ ମାଧୁରୀ କିବା ଚମତ୍କାର ରେ ।
କୁନ୍ଦନକଲି, ଝଲକଝଲି ସକଲ ଗଉର ରେ । ଘୋଷା ।
ଶ୍ରୀରାଧା ଛବି, ହୃଦୟ ରବି, କିରନ ଗଉର ରେ ।
ଭରତ ଦିଗ, ଦିଗବିଦିଗ, ସକଲ ଗଉର ରେ । ୧ ।

କଳ୍ପତରବ, ଶାଖା ପଲ୍ଲବ, ସ୍ୱର୍ଣ୍ଣାଙ୍ଗ ରୁଚିର ରେ ।
ପକ୍ଷୁ ପତଙ୍ଗ, ନାନାବିଧ ରଙ୍ଗ ସକଳ ଗଭିର ରେ । ୨ ।
କିବା ଅଦ୍ଭୁତ, ଅଷ୍ଟର୍ଯ୍ୟ ଜାତ, ବୃନ୍ଦାବନ ଘୋର ରେ ।
ସଙ୍ଗିସଙ୍କୁଳ, ତମାଲ ଦଳ, ଶ୍ୟାମଙ୍କ ପଞ୍ଜର ରେ ।
ଯମୁନାଜଳ, ଶୁଦ୍ଧ ଉଜ୍ଜ୍ୱଳ, ଲବନ ଗଭିର ରେ ।
ଶିଶୁଚନ୍ଦନ, କରେବନ୍ଦନ, ଗଭିର ପୟର ରେ । ୪ ।

ପୟାର

ଗୌରଉଦ୍ଧପନ ଛବି ଗୌର ଶ୍ୟାମଛଟା, ସଖିଗଣ ମଞ୍ଜୁଅଙ୍ଗ ସଗର୍ବେ ଉଭଟା ହେ ।୧। ଜାନମ୍ରି ଅନାଲ ବୃନ୍ଦା ଦ୍ରବ୍ୟ ମଧୁରସ, ଉନ୍ମାଦ ବଢ଼ା ମାଦକ ପଦାର୍ଥ ବିଶେଷ ହେ । ୨ । ମାଧବ ମଲ୍ଲୀ ମାଳତୀ କଦମ୍ବ ଅଶୋକ, ଏଇ ପଞ୍ଚ ପୁଷ୍ପରସ ଏକତ କାରକ ହେ । ୩ । କରିଇଲେ ଘନଶ୍ୟାମେ ଦ୍ରବ୍ୟ ମଧୁପାନ, ଖାଇଲେ ଉଦ୍ଦୀପ ବୃଦ୍ଧି ଅଘୂର୍ଣ୍ଣ ନୟାନ ହେ । ୪ । କିଷ୍ଟେର ଅଧରାମୃତ ରାଧେ କେଲ ପାନ, ଶ୍ରୀରାଧା ଅଧରାମୃତ ନିଲ ସଖି ଗନ ହେ । ୫ । ବୋଲେ ଶ୍ରୀଚନ୍ଦନ ମତ୍ତ ମାତଙ୍ଗ ଗାମିନୀ, ହୋରି ଖେଳ ଖେଳ ଆରମ୍ଭିଲ ନୀଳମଣି ହେ । ୬ ।

ଯଥାହେଗ

ଏମନ ସମ୍ବର୍ଦ୍ଧ, ତୈଲୋକ୍ୟ ଦୁର୍ଲ୍ଲଭ, ନାହିଁ ନାହିଁ ଜୁନ ଖାନେ ହେ ।
ରସରାଜ ବୋଲି, ଶୁନ କୁତୂହଳି, ବସନ୍ତ ରାଜ କଣନେ ହେ ।
ଫଗୁଖେଳିଲ ଶୋଭାବନ, ଏକେ ବହିବା ଏଇ ବିଧାନ ହେ । ୧ ।
ମନେ ଏଇ ଭାବ, ଜାନି ବୃନ୍ଦାଦେବୀ, ଲୟାଁ ଅବିର ଫୁଟିତ ହେ ।
ଦନେ କୃଷ୍ଣପାଶେ, ଶତଭିର ରହସେ୍ୟ, ବାଣ୍ଟିଲ ସର୍ବ ଯୁବତୀ ହେ ।
କୃଷ୍ଣ ଧରି ନଜକରେ, କୁଚମଣ୍ଡଳରେ ଫଗୁ ମାରେ ହେ । ୨ ।
ମାରେ ଠକା ଠକି, ଅତ୍ୟନ୍ତ କୌତୁକୀ, ଖେଳ ହେଲି କୁତୂହଳେ ହେ ।
ଧବଳ ଶ୍ୟାମଳ, ପୀତବର୍ଣ୍ଣ ଛୁଲ, ସବାଇ ସୁରଙ୍ଗ ଭେଲ ହେ ।
ଏଇକାଳେ ଶ୍ରୀଚନ୍ଦନ, ସେବାକରେ ଯୁଗଳ ଚରନ ହେ । ୩ ।

ଏକତାଲୀ

ଅବିରତେ ଅବିରତ ଉଡ଼ଲରେ, ଲଲିତ ବସନ୍ତରସ, ରସେ ରସି ପୀତ-ବାସ, ଗୋପୀଗନ ସଙ୍ଗେ ହୋରି ଖେଳନ୍ତ ବଢ଼ଲ ରେ । ଘୋଷା । ମାରେ ମର୍ମ ଖୋଜି ଖୋଜି, ନୀଳମଣି ଚନ୍ଦ୍ର ହେଜି, ବାମାଗନ କି ସୁରଙ୍ଗ ଦଶିଲ ରେ । ୧ । ବୃକ୍ଷଲତା ଯତ ଛୁଲ, ଅବିରେ ରଙ୍ଗ ହଇଲ, କାନନକୁ ହିନ୍ଦୁରେ ମଣ୍ଡିଲ ରେ । ପକ୍ଷୀ ମୃଗ ଗାବଚନ, ରଙ୍ଗିମା ଭେଲ ବହନ, ମାନିକ୍ୟ ଛୁଏଣି କିବା ବହଲ

ରେ । ୩ । ଅମ୍ବର ଜଡ଼ ଗଗନ, ଭରତ ରଙ୍ଗ ବରନ, ବଣଦଗ ଅକାଶ ପୂରନ୍ତି ରେ । ୪ । ଚନ୍ଦ୍ରକିରନ ସୁରଙ୍ଗ, ସବ ହଇଲ ବରଙ୍ଗ, ବନଭୂମି ଦେହି ଧାଇଁଲା ରେ । ୫ । ଯମୁନାଜଲ କାଳିମା, ହୃଦୁଁ ଗେଲ ସେ ରଙ୍ଗିମା, ଏଥି କଏ ହେଙ୍ଗୁଳ ଗୋଳିଲା ରେ । ୬ । ଇନ୍ଦ୍ରନୀଲମନି ପର, କୌସ୍ତୁଭ ଅଙ୍ଗ ମାଧୁରୀ, କୋଟି ଅରୁନେର ପ୍ରଭା ଜିଣିଲା ରେ । ୭ । ଭ୍ରମର କୋକିଲ ଯତ, ବସନ୍ତ ବିହଙ୍ଗ କତ, ଶାଟିକା ମୟୂରୀ ରଙ୍ଗ ହଇଲା ରେ । ୮ । ଏମନ ସମୟ ଯାନି, ଶ୍ରୀଚନ୍ଦନ ଚୋଣେ ଭନି, ମାନିନୀ ମଣ୍ଡଳୀ ଏଥି ଅସିଲା ରେ । ୯ ।

ଶ୍ଳୋକଃ

ସୌନ୍ଦର୍ଯ୍ୟ ଟୁରବେଲକୌତୁକରସା ଗାୟନ୍ତଭଃ ସୁସ୍ୱରଂ ।
ବୀଣାବେଣୁ ମୃଦଙ୍ଗ ତାଳ ମୁହଲ ସମ୍ପାଦୟନ୍ତ୍ୟୋଗୀତଂ ।
ବାମେ ନୃତ୍ୟନ୍ତି ରାଧିକା ରସବତୀ ଦକ୍ଷେ ଲଳିତା ସ୍ଥିତା ।
ମଧ୍ୟେ ଶ୍ୟାମଲ ସୁନ୍ଦର ରତିକଳାମୁଦ୍ଧୀପୟନ୍ତ୍ୟୁତମା ।

ଚକ୍ରପଦୀ

ରାସେ ବିଲସେ ଗୋ ସକଲ ରସିକା, ମଣ୍ଡଳରେ ନୃତ୍ୟକରେ ଗାନ୍ଧାର୍ବି ରାଧିକା । ଘୋଷା । ଦ୍ରିମି ଦ୍ରିମି ଦ୍ରିମି ବାଜେ ତବଲ ମର୍ଦ୍ଦଲ, ଝନ ଝନ ଝମକଇ ମନ୍ଦିରା ମୁକୁଳ । ୧ । ବୀଣାଶୀ କର ଚରନ ଘୁଙ୍ଗୁର ମିଲାୟେ, ଭୁଙ୍ଗ ବାଦ୍ୟ ବାଜୁଛତେ ଝଲକଇଁ ଯାୟେ । ୨ । ପ୍ରେମପକ୍ଷ ପଞ୍ଜୁରୀକା ସକଲ ମଞ୍ଜରୀ, କେ ବାୟେ ତମ୍ପା ଝଞ୍ଜରୀ କେ ବାୟେ ବାଂଶରୀ । ୩ । କର୍ମୟୀ ଚମ୍ପକଲତା ବାଜାଏ ମୃଦଙ୍ଗ, ଇନ୍ଦୁରେଖା ମିଲାଏନ ତାଳେ ମୁହୁ ରଙ୍ଗ । ୪ । ରଙ୍ଗଦେବୀ ସୁଦେବୀକା ଗାନ ତାନ ଛନ୍ଦେ, ରାଗେର ଅଲପ ଉଠେ ଧ୍ରୁବେର ମଣ୍ଡଳେ । ୫ । ସାରିଗମ ପଦ ନିଶା ସାସାର ସାସାର, ରିମପମ ଧନୀ ଧପ ନିଧପମଭର । ୬ । ତାତାଥେଇ ତାତାଥେଇ ଥୋତାକ ଥୋତାକ୍, ଥୋଦ୍ରିମି ଥୋଦ୍ରିମି ଦ୍ରାମି ଥୋଦ୍ରାମି ଥୋତାକ । ୭ । ପଦ୍ମଲେ ଉଠଇ ଶ୍ରୁତି ମାଲବ ମାଲବ, ମଙ୍ଗଲ ତୋଡ଼ି ବରାଡ଼ି ଧନା ଶ୍ରୀ ଭୈରବ । ୮ । ଧନାଶ୍ରୀ ମାଲଶ୍ରୀ ପଟ କୌଶିକ ମଞ୍ଜରୀ, କାମୋଦୀ ଆମୋଦି ବସନ୍ତକ ମୁଖାବରୀ । ୯ । ମୋହନ ମୋହନ ଅର ବେଲାଲ ଗୁର୍ଜ୍ଜରୀ, ସୁରଞ୍ଜନ ସୁରଞ୍ଜନ ପ୍ରଚଣ୍ଡ ଗୁଣ୍ଡରୀ । ୧୦ । ମହ୍ଲାରମଲ୍ କେଦାର ସାବେର ଅସାବରୀ, ମଲ୍ଲତର ମାଲ୍ଲ ବିଜୟ ଗଉଡ଼ୀ । ୧୧ । ପ୍ରଗୁପ୍ତରେ ଗୁପ୍ତ ଯେ ଲଚାର ଯେ ଭଭିର, ପଟତାଲ ଏକତାଲି ନିଶ୍ଚିତ ପ୍ରଭିର । ୧୨ । ଏଇ ମତ ଯତ ତାଲ ରୂପକ ଝମ୍ପାକ, ସବତାଲ ରାତିରାଗ ଆପନ କାଶ୍ରୀକ । ୧୩ । ବାମେ ରାଇ ରସବତୀ ଦକ୍ଷିନେ ଲଳିତା, ମଧ୍ୟେ ଇନ୍ଦ୍ର ନୀଲମନି ଚନ୍ଦ୍ରମା ଉଦିତା । ୧୪ ।

ଅନନ୍ତ ଶନ୍ଦ୍ରୂପେ ବୃନ୍ଦାଦେବୀ ଭଣ୍ଡା, ପୁଷ୍ପ ବୃଷ୍ଟି କରେ ହେବେ ଦୁହିଁକାର ଶୋଭା । ୧୫ । ବାଜଇ ଦୁନ୍ଦୁଭି ବାଜା ଉଦ୍ଧତନାଦରେ, ଅକାଶେ ଗନ୍ଧର୍ବପତି ଥାଇ ନୃତ୍ୟକରେ । ୧୬ । ନାଚେ କୃତ୍ତିବାସ ହୃଷ୍ଟେ ପାର୍ବତୀର ସାଥେ, ଅନନ୍ଦେ ନାରଦ ନାଚେ ବୀନା ଲୟିଁ ହାଥେ । ୧୭ । ଶ୍ରୀରୂପ ମଞ୍ଜରୀ ହୃଦ୍ୟେ ନିଷ୍ଠା ଯାରା-କାତ, ବୋଲେ ଶ୍ରୀଚନ୍ଦନ ତାରା ଏଇ ସେ ସମ୍ମତ । ୧୮ ।

ପୟାର

ହେନ ବେଳ ଘନଶ୍ୟାମ ପୂର୍ଣ୍ଣକାମ ହୟିଁ, ଠାରଦିଲ ନୟାନାନ୍ତେ ବୃନ୍ଦାକେ ହେରୟିଁ। ହେ । ୧ । ନଡବ୍ରଜଜାୟା ଯେତ କନ୍ୟାଗନ ଅଛେ, ସବ ଦୁଃଖେ କାନ୍ଦିଛେ କିଶୋରୀର କାଛେ ହେ । ୨ । ଚତୁର ରତନ ହେନ ବଧୂ ଚରକାଲ, ସମରସ ଅସ୍ବାଦନ ମାନସେ ବାଞ୍ଛିଲ ହେ । ୩ । ତବେ ବୃନ୍ଦାମୁଖ ହେରି ଅଜ୍ଞା ଦିଲ ରାଧେ, ବନ୍ଧୁ କେନ କନ୍ୟାଗନ ମଦନେ ଦଗଧେ ଗୋ । ୪ । ଲକ୍ଷ୍ୟି । ନାଚଡେ କିବା ତାରା ଦୁଃଖ ଯାବେ, ମୟୂର ନାହୟେ ସେଇ ଅବଳ୍ ସ୍ବଭାବେ ଗୋ । ୫ । ଅଜ୍ଞା ଶୁନି ବୃନ୍ଦା ବୋଲେ ଶ୍ୟାମ ହୃଦ ଜାନି, ସକଲ ସ୍ବାର୍ଥ ସମ୍ପତ କରିଲ ଅପନି ଗୋ । ୬ । କାଲି ଦିବା ପୂର୍ଣ୍ଣମାସୀ ଦଶଦଣ୍ଡ ଅଛେ. ମଧୁତେ ମାଧବ ବଧୂ ଯୋଗେଶ୍ବର ସ୍ବଚ୍ଛେ ଗୋ । ୭ । ବସନ୍ତେର ପୂର୍ଣ୍ଣରାସ ପୂର୍ଣ୍ଣଚନ୍ଦ୍ର ନିଶା, ପୂର୍ଣ୍ଣ ମନୋରଥ ରତି ହବେ ସମ ଯଶା ଗୋ । ୮ । ଦ୍ବୟକନ ସମରସ ଅସ୍ବାଦନ କର, ଆପନ ଅଙ୍ଗେର ବାଧା ଅପନି ନିବାର ହେ । ୯ । ସପକ୍ଷ ବିପକ୍ଷ ଲୟିଁ । ଯତ ବ୍ରଜନାରୀ, ଅଂଶିନୀ ଅଂଶ ଅଂଶାଂଶ ଏସବ ତୁମାରି ଗୋ । ୧୦ । ଅଷ୍ଟନାୟିକା ଲକ୍ଷନେ ସ୍ବୟଂ ବିଦ୍ୟମାନ, ସ୍ବାଧୀନା ଭର୍ତ୍ତୃକା ହୟେ ବିଶେଷ ପ୍ରଧାନ ଗୋ । ୧୧ । ବୋଲେ ଶ୍ରୀଚନ୍ଦନ ପ୍ରାନନାଥ ମନ ଜାନି, ବୃନ୍ଦାବାକ୍ୟେ କୃପା-ଦୃଷ୍ଟି ବୃଷ୍ଟି କୈଲି ଧନୀ ଗୋ । ୧୨ ।

ଶ୍ଳୋକଃ

ଅଙ୍ଗ ଗୌର ସୁଚନ୍ଦ୍ରିକା ସୁରଚିତେ ଲାବଣ୍ୟ ଭୃଙ୍ଗାମ୍ବୁଵା ।
ଶ୍ୟାମ ପ୍ରେମସୁଧାନିଧୌ ବିଜନିତା କାରୁଣ ଲକ୍ଷ୍ମୀ ସ୍ବୟଂ ।
ଲାବଣ୍ୟୈକ କଳା ପ୍ରମୋହନ ପଦଂ ରୂପଂ ଜଗଦ୍ବୈଭବ ।
ରାଧାୟା ସମଦେବିତା ଶ୍ରୀନିଖିଳେ ବ୍ରହ୍ମାଣ୍ଡ ଖଣ୍ଡେ କ୍ବଚିତ୍ ।

ପୟାର

ଅଙ୍ଗ ଗୌର ସୁଚନ୍ଦ୍ରିକା ତରଙ୍ଗ ଉଦ୍‌ବର୍ତ୍ତ, ଉନ୍ନତ ଲାବଣ୍ୟ ମହା ଉତ୍ସବ ବର୍ଦ୍ଧନ ହେ । ୧ । ଶ୍ୟାମ ପ୍ରେମ ସୁଧାନିଧି ଜନ୍ମିଛେ ବିଧାତ, ସ୍ବୟେଁ ଶ୍ରୀକାରୁଣ୍ୟ ଲକ୍ଷ୍ମି ସାତ କୁମ୍ଭଲତା ହେ । ୨ । ସକଲ ଲାବଣ୍ୟ ମୂଳ ବଦନେ କମଳ, ଜଗତ

ବୈଭବାନନ୍ଦ ଶ୍ରୀଅଙ୍ଗେ ଲଭିଲ ହେ । ୩ । ବୋଲେ ଶ୍ରୀଚନ୍ଦନ ଧୂଣ୍ଡି ଅଣ୍ଡେ-ମଣ୍ଡଳ, କୋଏ ସମ ଶ୍ରୀରାଧିକା ନଖକାନ୍ତି ତୁଲ ହେ । ୦ ।

ଶ୍ଳୋକଃ

ରାଧା ନିତ୍ୟୈଶ୍ୱର୍ଯ୍ୟ ଶ୍ରୀମଦ୍‌ବୃନ୍ଦାବନ ବିହାରିଣୀ ।
ଶ୍ରୀକୃଷ୍ଣ ବଲ୍ଲଭା ଯତ୍ର ତତ୍ର ରାଧାଭିଧାମମ ।

ପୟାର

ଶ୍ରୀରାଧାର ନିଜ କୃଷ୍ଣତାର ଯେ ଇଶ୍ୱରୀ, ଶ୍ରୀବୃନ୍ଦାବନେର ମାଝେ ସ୍ୱଚ୍ଛନ୍ଦେ ବିହରି ହେ । ୧ । କୃଷ୍ଣେର ପ୍ରାନବଲ୍ଲଭା ଯେ ହୟେ ନିଶ୍ଚୟେ, ତାତେ କୃନ ପ୍ରେମ ନାହିଁ ବୃନ୍ଦ ମହାଶୟେ ହେ । ୨ । ରାସୋତ୍ସବ ଶ୍ରାନ୍ତ ଜାନି ପ୍ରିୟା ପ୍ରୀୟ ଦ୍ୱୟ, ମନ୍ଦଗୁଲେ ସେବେ ବାତ ପୁଟରେ ପୃଁ । ମଲୟ ହେ । ୩ । ହେନବେଲା ଏଇ ଲୀଲ ବାହ୍ୟ ତବେ ହେଲ, ବିଦଗ୍ଧେଚ୍ଛା ଯତ୍ନେ ରତ୍ନ ପିଠ ଲୟେଁ । ଦିଲ ହେ ।୪। ସେଇ ପିଠପରେ ବିଜେ ନାଗର ନାଗରୀ, କୁସୁମ ବ୍ୟଜନେ ବିଞ୍ଚେ ପ୍ରିୟ ସହଚରୀ ହେ । ଜାନିଲ ଶ୍ରୀବନଦେବୀ ଦୁହାଁ ଶାନ୍ତ ଗେଲ, ସଖୀ ମଞ୍ଜରୀର ସାଥେ ଅନ୍ତରେ ଥାକିଲ ହେ । ୬ । ମିଷ୍ଟାନ୍ନ ସାମଗ୍ରୀ ଲୟେଁ । ଜାନି ବୃନ୍ଦେ କରେ, ବାଢ଼ି ଦିଲ ଅଷ୍ଟପୂର୍ଣ୍ଣା ମହା ମୋଦଭରେ ହେ । ୭ । ତବେ ପ୍ରିୟାପ୍ରିୟ ଦୁହେଁ ଭୋଜନ କରିଲ, ସୁଦେବୀ ସୁଗନ୍ଧ ଜଲ ଲୟେଁ । ସମର୍ପିଲ ହେ । ୮ । ଭୋଜନ ଶେଷ ଅଚୌଵନ ତେଜିଲ ଜାନି, ସୁଚଣ୍ଡା ସୁବର୍ଣ୍ଣ ନିବାସ ଖଟିଲ ଅପନି ହେ । ୯ । ଲଲିତା ଅନିୟେଁ । ଦିଲ ସୁଦ୍ରଲ ବିଟିକା, ଆନନ୍ଦେ ଚର୍ବନ କରେ ରସିକ ରସିକା ହେ । ୧୦ । ଭୋଜନ ଶେଷେ ଯତ ଅବଶେଷ ଦ୍ରବ୍ୟଛିଲ, ବୃନ୍ଦାସହ ସବସଖି ହୃଷ୍ଟେ ପାନକୈଲ ହେ । ପ୍ରେମବତୀ ଜଲଦତେ ସବେ ହସ୍ତ ଧୌତ, ସେ ପାର ପାର୍ଶ୍ୱିକା କୈଲ ସ୍ଥାନ ପରିଷ୍କୃତ ହେ ।୧୨। ଶ୍ରୀମତୀର ଅଜ୍ଞା ପାୟେଁ । ଲଲିତା ସଜନି, ଦଶନବସବିଟିକା ବାଣ୍ଟିଲ ଅପନି ହେ । ୧୩ । ବୋଲେ ଶ୍ରୀଚନ୍ଦନ ନିଦ୍ରାଲସ କାଲ ହେର, ଚଳିଲ କୁସୁମ ଶଯ୍ୟା ପ୍ରିୟ ସହଚରୀ ହେ । ୧୪ ।

ଶ୍ଳୋକଃ

ମଦଚଞ୍ଚଳ ଚକୋର ଗୃହୀତା ଗୌରଦୃଷ୍ଟି,
ରବଦନଦର୍ମିତରିକା ରୋହିଣୀ କାନ୍ତମୂର୍ତ୍ତି ।
ଅବିକଲକଲଧୌତା ଧୌତ ଧୌତେନ୍ଦୁକଣ୍ଠୀ,
ମଧୁରମମାମଧୁ ଗାନ୍ଧୀ ରାଜତେ ଯତ୍ରରାଧା ।

ପୟାର

ମଦଚଞ୍ଚଳ ଚକୋରୀ ଗୃହୀ ଗୌରଦୃଷ୍ଟି, ବଦନ ଦଲିଛେ ଦୃଷ୍ଟିଚନ୍ଦ୍ର

ଶୋଭା ସୃଷ୍ଟି ହେ । ୧ । ବାରବାଣ ସୁକୁନ୍ଦନରସାନେର ଝଳା, କାଳିମା ହରଇଛେ ଶୋଭା ସମ୍ପଉଛେ ତୁଳି ହେ । ୨ । ମଧୁର ରସ ଜନକ ଇନମେର ଛୁଲି, ମୁଗ୍ଧା ମାଧଶିରଭୂଷା ନବସବ ବଲ୍ଲି ହେ । ୩ । ମନୋହର ପୁଲଶେଯେ ସବେ କେଳି ବଜେ, ଛ ଦବ ତୁଲନା ନବେ ସବ ବସବାଜେ । ୪ । ରସରାଜ ଦକ୍ଷେ ନୀଳମଣି ସିଂହାସନ, ଶବାଜଛେ ରାଇ ଯଥା ରାଜାଧିରାଜ ଜନ ହେ । ୫ । ବୋଲେ ଶ୍ରୀଚନ୍ଦନ ଦଖ ଦାସୀ ଭକ୍ତଗନେ, କୋଟିଜନ୍ମେ ଅବସନେ ପୂଲିଙ୍ଗ ସାଧନେ ହେ । ୬ ।

ଚଉପଦୀ

ରସବତୀ ସଙ୍ଗେ, ରଙ୍ଗେ ରସିକ, ରଙ୍ଗେ ରତିକଶେଖର ବିହରିଲେ ଗୋ । ଘୋଷା । ଝଳ ପୂର୍ଣ୍ଣଚନ୍ଦ୍ର ରଜନୀ, ଝଳ ପୂର୍ଣ୍ଣଚନ୍ଦ୍ର ବଦନୀ, ବ୍ରଜ ଯୁବରାଜ ଭେଳାଙ୍କର ଅଜ, କିବା ରସହିଣ୍ଡୋ ପହଁରିଲେ ଟ୍ଠେ । ୧ । କାମରାଜ ସଙ୍ଗେ ସମର, ଇଚ୍ଛାକର ନାଗରବର, ନାଗର ରାଜଙ୍କୁ କପଟ କରିକି, ପୁଲିନ କାନନୁ ଗୁହା-ଇଲେ ଗୋ । ୨ । ପଞ୍ଚବାଣ ପ୍ରପଞ୍ଚ ଦାଉ, ପାଞ୍ଚବାଲୁ କ ଅଛୁ ଆଉ, ଲଜ୍ଜଧନ ଲଞ୍ଚ ଦେଇ ଢାଞ୍ଚଲକୁ ଚଞ୍ଚଳ ଭଙ୍ଗିକି ସଂହରିଲେ ଗୋ । ୩ । ଭ୍ରୂରୂପେ ଅଞ୍ଜନ ଗୁଣ, ରଙ୍ଗ ଯୋଖି ନୟନ ବାଣ, ଇବା ଉଦ୍ଦେଶ୍ୟରେ, ଗୁହିବାଲାଳରେ ଦମ୍ଭେ ଦାମ୍ଭାଳକ ଯୁଝାଇଲେ ଗୋ । ୪ । ରୁଣୁଝୁଣୁ ନୂପୁର ନାଦ, ରଣଜୟ ଡମଳ ନାଦ, ଭଣେ ଶ୍ରୀ ଚନ୍ଦନ, ହେର ଏ ବିଧାନ, ଜାଣି ଜାମରାଜ ଓହରିଲେ ଗୋ । ୫ ।

ଶ୍ଳୋକଃ

ନବୀନ ଜଳଦାବଳି ଦଳିତ ଗୃହ୍ଣ ସୌଦାମିନୀ ।
ମହେନ୍ଦ୍ର ମଣିମଧ୍ୟଗା କନକ ମଞ୍ଜୁରେଖା ଯିବା ।
ତମାଲତରୁ ରଞ୍ଜିତା ରୁଚିର ହେମ ବଲ୍ଲିରିତା ।
ହରେ ଉରସି ରାଜତେ ନବକିଶୋରୀ ରାଧାମ୍ବୁଜା ।

ଯଥାରାଗ

ରାସନୀଳ ଶେଷେ, ରସ ପ୍ରାନ୍ତବଣେ ନାଗରୀ ନାଗର ଦ୍ୱୟ ହେ ।
ବିଜୟେ ନିକୁଞ୍ଜେ, ଦିବ୍ୟ ପୁଷ୍ପଶେଯେ, କରିୟା ମଦନ ଜୟ ହେ ।
କୋଟି କୋଟି ରତି କାମ, କୋଟି କଳପେ ନା ହୟେ ସମ ହେ ।
ଅନ୍ତରଙ୍ଗଜନା, ସେବା ଆଦରିଲ, ଅନ ଆନ କୁଞ୍ଜେ ଗେଲ ହେ ।
ଶ୍ୟାମ ଉରଦେଶେ, ନାଗର ରହସ୍ୟ, ରସିକମଣି ବିରାଜିଲ ହେ ।
ନୀଲ ପଞ୍ଜରର ମାଝେ, ଯେନ ବସନ୍ତ ବିହଙ୍ଗି ସାଜେ ହେ । ୨ ।
ନବୀନ ଜଳଦ; ମଣ୍ଡଳ ମଧ୍ୟେ କି, ଲଳିତ ବିଜୁଳି ଦିଶା ହେ ।
ଇନ୍ଦ୍ର ନୀଳମଣି, ମଧ୍ୟେ କି ନିଶାନି, ମଞ୍ଜୁଲ କନକ ରେଖା ହେ ।

କିବା ନୀଳଗିରି ଶୋଭା, ତାରମଧ୍ୟେ ହରିତାଳ ଜ୍ୟୋତି ହେ । ୩ ।
ନବୀନ ତମାଳ, ତରୁତେ ରୁଚିର, ଯଥା ହେମବଲ୍ଲୀ ଛନ୍ଦା ହେ ।
ନବୀନ କିଶୋର, ଢ଼ରେ ମନୋହର, ତଥା ଶ୍ରୀକିଶୋରୀ ରାଧା ହେ ।
ଏହିକାଳେ ଶ୍ରୀମଦନ, ନିଜ ଦୁଃଖ କରେ ନିବେଦନ । ୪ ।

ଶ୍ଳୋକଃ

ଧ୍ୱନିତ ମଧୁପ ପୁଞ୍ଜେ ପୁଷ୍ପିତାଶୋକକୁଞ୍ଜେ ।
ନିଜହୃତ ପରଗ୍ଭରୀ ନର୍ମିତେ ପୁଷ୍ପତଳ୍ପେ ।
ଅତିଶୟ ସୁଖ ନିଦ୍ରା ତୁଷ୍ୟମାନା ତରଙ୍ଗେ ।
ସ୍ମର ନିଭୃତ ନିକୁଞ୍ଜେ ରାଧିକାକୃଷ୍ଣଚନ୍ଦ୍ରୌ ।

ପୟାର

ପୂର୍ଣ୍ଣ ମନୋରଥେ ପୂର୍ଣ୍ଣ ସୁଖଦାନ କୁଞ୍ଜେ, ଧ୍ୱନିକୃତ ମନୋହର ମଧୁବ୍ରତ-ପୁଞ୍ଜେ ହେ । ୧ । ନିଜହୃତ ସଖି ତସ୍ତୁରୀର ତାତପର୍ଯ୍ୟା, ନର୍ମିନିଛେ ସୁକୋମଳ ଜାତଦଳ ସଜା ହେ । ୨ । ସହଜେ ପୁଷ୍ପିତ ଲତାକୁଞ୍ଜେ ଚମତ୍କାର, ପୁଷ୍ପ ଗନ୍ଧନ୍ୟୂଁ । ମନ୍ଦେ ବହଇ ସମୀର ହେ । ୩ । ଫୁଲର ବାଞ୍ଛନ ଦର୍ବ୍ୟ ଫୁଲର ମୃଚୁଲି, ଫୁଲର ଗୁଡ଼ୁଆ ଫୁଲ ଝାଳର ସିକୁଳି ହେ । ୪। ଫୁଲର ବାଞ୍ଛନ ଫୁଲେ ଗୁମର ମାଧୁରୀ, ଫୁଲର ତୋରନା ଛନ୍ଦା ଫୁଲର ମଣ୍ଡର ହେ ।୫। ରସିକ ନାଗରବର କୁଞ୍ଜ ଶୋଭା ହେବ, ଏକାନ୍ତ ହଇଲ ରସିକନୀ କରଧରି ।୬। ତବେ ରାଈ ଶ୍ୟାମ ନିଦ୍ରା ଅଲସ ଉଦୟ, ଫୁଲଶେଯେ ଅତିଶୟ ସୁଖେ ନିଦ୍ରା ଯାୟେ ହେ । ୭ ।

ଶ୍ଳୋକଃ

ଅବିରତ ଅନୁରାଗ ପ୍ରୋତ୍ସଲଦ୍ଦୋପନାରୀ ।
ତତିରଚିତ ସୁସେବା ମାନନେ ଲବ୍ଧବର୍ଣ୍ଣୌ ।
ତନୁ ପୁରଟ ସମାରେ ହ୍ଲୀଲନଂ ପ୍ରେମରାଙ୍ଗେ ।
ସ୍ମର ନିଭୃତ ନିକୁଞ୍ଜେ ରାଧିକାକୃଷ୍ଣଚନ୍ଦ୍ରୌ ।

ପୟାର

ତବେ ଅବିରତ ଅନୁରାଗ ଉଚ୍ଛଳିନ, ଆଦରିଲ ଯେଙ୍ଗା ସେବା ସବଳି ସଜନୀ ହେ । ୧ ସଜଳବାଟିକା କରେ ଲଳିତା ସେବନ, ବିଶାଖା ଦରଇ ସେବା କର୍ପୂର ଚନ୍ଦନ ହେ । ୨ । ଚମ୍ପକଲତିକା ଡ଼ାଳେ କୁସୁମ ଗୁମର, ତଥା ନିଲପଟ ଖିନ୍ନି ଗୁଡିଲ ଧୀର ଧୀର ହେ । ୩ । ଇନ୍ଦୁରେଖା ଦରପନ ଧରି ଉଭହୟେ, ତୁଙ୍ଗବିଦ୍ୟା ବିନା ଲଯି । ମୃଦୁ ମୃଦୁ ବାୟେ ହେ । ୪ । ରଙ୍ଗିଯା ରଙ୍ଗିନୀ ଭାବେ ରଙ୍ଗଦେବୀ ମଞ୍ଜି, ଆନନ୍ଦରେ ଗାନକରେ ଲଳିତ ବସନ୍ତ ହେ । ୫ । ସୁଦେବୀ

କରନ୍ତି ସେବା ନବୀନ ମାଟୁସୀ, ତାର ପରେ କରେ ସେବା ଦ୍ୱାଦଶମଞ୍ଜରୀ ହେ । ଯେମନ୍ତ ମାଧୁର୍ଯ୍ୟ ଲୀଳା ବିସ୍ତାର ହଇଲ, ସବସଖୀଗନ ପ୍ରେମେ ହେଇଛେ ମତ୍ତଅଳ ହେ । ଏହିକାଲେ ନଟରାଜ ବସିବେ ମାନସ, କେମନ୍ତ ସମ୍ପୂର୍ଣ୍ଣ ସେଇ ହଇବେ ଉଲ୍ଲାସ ଗୋ ।୮। ବୃନ୍ଦାଦେବୀ ମୁଖ ହେର ହେଇଲ ଠଗ୍ରଠର, ସେବ ଚରଣ ଶବେ ଜାନିଲ କିଶୋରୀ ହେ । ୯ । ପ୍ରାନନାଥ ମନୋରଥ ପୂର୍ଣ୍ଣ ଯେନ ହବେ, ତେମନ୍ତ ଭ୍ରମିଲ ମଧୁରିମା ବାଣୀ ତବେ ହେ । ୧୦ । ଅମି କହି ଏକକଥା ଶୁନ ପ୍ରାନେଶ୍ୱର, ତୁମି ସର୍ବ ଚିନ୍ତାମନି ସର୍ବସ୍ୱ ଈଶ୍ୱର ହେ । ୧୧ । ଏ ବ୍ରଜମଣ୍ଡଳେ ଯତ ବରଜ ନାଗରୀ, ସବାଇ ରଚିତ ବିଶ୍ୱଭ୍ରମି ଜାଲ ହରି ହେ । ସବାକାର ଅନନ୍ଦିତ ହେଇଲ କେଲି ରସେ, ଧନ୍ୟା ଅଦ୍ଧ ନବକନ୍ୟା ଯୁଟେର ବିଶେଷେ ହେ । ୧୩ । ତୁମି ଅଟଛ ତୃତ ମତ ଚରହେ ଅକୁଲ, ଗଜସ୍ତ୍ରୀ ପୂଜନେ ସେଇ ତୁମାକେ ବରିଲ ହେ । ୧୪ । ମୟୂରର ପାର୍ଶ୍ୱେ ନୃତ୍ୟ କେଇଲ ତାରସନେ, ମୟୂରୀ ନାହଏ ଯେଇ ଥାଏ ତୋଷମନେ ହେ । ୧୫ । ଅବେ ଯେମନ୍ତ ରାଧାନେ ହବେ ସମରସ, ତାରି ସବ ମନପୂର୍ଣ୍ଣ କାମ କ୍ରୀଡ଼ାରସ ହେ ।୧୬। ତେମନ୍ତ ଅବମ୍ବ ଲୀଳା ବୃନ୍ଦାବନ ମାଝେଁ, ରସ କଲ୍ଲୋଳ ଉଛୁଳି ଗୋପିନୀ ସମାଜେ ହେ ।୧୭। ରସମୟୀ ସୁନାଗରୀ ମଧୁର ବାନୀ ଶୁନି, ରସରାଜ ମନରେ ଅନନ୍ଦ ଅକଥନ ହେ । ୧୮ । ବୋଲେ ତୁମି ଅମାର ନାଗରୀ ଶିରୋମନି, ପ୍ରେମମୟୀ ରାସେଶ୍ୱରୀ ରସ ରାଧାଇନି ଗୋ । ୧୯ । ତୁମାର ଅଜ୍ଞାବନେ ନହେ ରାସେର ବିଲାସ, ଅବେ ପୂର୍ଣ୍ଣରାସ ହବେ ଯେମନ୍ତ ମାନସ ହେ ।୨୦। ବସନ୍ତ ପୂର୍ଣ୍ଣମାରାତି ହଇଛେ ଅଗତ, ଚନ୍ଦ୍ରେର କିରନେ ବନ ଭୂମି ଉଜ୍ଜ୍ୱଳିତ ହେ । ୨୧ । ନାନାଜାତି ବର୍ଣ୍ଣ ଫୁଲ ପ୍ରଫୁଲ୍ଲିତ ଅତ, ଉଜ-ଦଗେ ପୂରି ବାସ ହରେ ଯୁବା ଧୃତ ହେ । ୨୨ । ଯମୁନାର ତୀରେ ବହେ ମଲୟ ମରୁତ, ଫଲ ମଲ ଦଶେ ରାସ ସ୍ଥଳ ବାଲ ଯତ ହେ । ୨୩ । ମୋହନ ବଂଶୀତେ ସବେ ହଇବେ ଅରତ, ସମରସେ ରାସରସ ଲହରୀ ବଦ୍ଧିତ ହେ । ୨୪ । ସବ ସଖୀଗନ ଶୁନି ଅନନ୍ଦ ବାଢ଼ିଲ, ବେନି ଜନ ପ୍ରମୋଦତେ କେଲି ରସେ ଭୋଳ ହେ । ୨୫ । କୁନ୍ଦନକମରେ ଯେନ ମର୍କତ ନାୟକ, ବୋଲେ ଶ୍ରୀଚନ୍ଦନ ରାଧାକୃଷ୍ଣ ତନୁ ଏକ ହେ । ୨୬ । ବୃନ୍ଦାବନବାସୀ ନିଜ କୁଞ୍ଜେ ଗେଲ, ବୋଲେ ଶ୍ରୀଚନ୍ଦନ ମନ ତନ୍ମୟ ହଇଲ ହେ ।୨୭। ନିଭୃତ ନିକୁଞ୍ଜ ମାଝେଁ ଦଶ ଓରେ ମନ, ଶ୍ରୀରାଧା ଶ୍ରୀକୃଷ୍ଣ ଦୋହେଁ କରଛେ ଶୟନ ହେ ।

ଚଉପଦୀ

କୁଞ୍ଜେ କୁଞ୍ଜେ ଯେନ, କୁଞ୍ଜରଗମନୀ, କ୍ରୀଡ଼ାକରେ କୁଞ୍ଜେ ବିନୋଦୟୀ । କୁନ୍ଦନ କମରେ, ମର୍କତ ନାୟକ, ନବଢଙ୍ଗରେ ହେଲ୍ଲ ଦ୍ୱାପ୍ୟେ ଜୁଆ । ଘୋଷା ।

